# ସଇଁପୂନ

ଶ୍ରୀ ଚନ୍ଦ୍ରାମଣି ପାଣିଗ୍ରାହୀ




ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ ଲି:

# ସଞ୍ଚୟନ

ସଂଗ୍ରାହକ

ଶ୍ରୀ ଚିନ୍ତାମଣି ପାଣିଗ୍ରାହୀ, ଏମ୍. ଏ., ବି. ଏଲ୍.

ସମ୍ପାଦକ, ପ୍ରଜାତନ୍ତ୍ର

ମୂଲ୍ୟ ଏକଟଙ୍କା
ଅଭଣ୍ଡ ଅଠଅଣା ମାତ୍ର

# ସୂଚନା

ରାଧାନାଥ ଓ ଫକୀରମୋହନଙ୍କ ପରେ ଆଧୁନିକ ଓଡ଼ିଆ ସାହିତ୍ୟର ବିଭିନ୍ନ ଦିଗର ବିକାଶରେ ଯେଉଁ ସାହିତ୍ୟିକମାନେ ବିଶେଷ ଅଗ୍ରଣୀ ଥିଲେ, ସେମାନଙ୍କୁ ଅନ୍ତତଃ ତିନୋଟି ଗ୍ରୁପ୍ ବା ଗୋଷ୍ଠୀରେ ବିଭକ୍ତ କରାଯାଇ ପାରେ । ଫକୀରମୋହନ ଓଡ଼ିଆ ସାହିତ୍ୟରେ କ୍ଷୁଦ୍ର ଗଳ୍ପର ଯେଉଁ ମୂଳଦୁଆ ପକାଇଥିଲେ, ତାହାର ବିକାଶ ବିଭିନ୍ନ ସ୍ତରରେ ଘଟିଛି । ସେହି ଗ୍ରୁପ୍‌ମାନଙ୍କ ମଧ୍ୟରୁ ପ୍ରଧାନତଃ ସତ୍ୟବାଦୀ, ବାରୁଣୀ ଏବଂ ଅନ୍ୟଟି ସବୁଜ ଗ୍ରୁପ୍ । ଓଡ଼ିଆ ସାହିତ୍ୟରେ କ୍ଷୁଦ୍ର ଗଳ୍ପ କ୍ଷେତ୍ରରେ ସତ୍ୟବାଦୀ ଗ୍ରୁପ୍‌ର ବିଶେଷ କିଛି ଦାନ ନାହିଁ । ବାରୁଣୀ ଗ୍ରୁପ୍‌ରେ କେତେକ କ୍ଷୁଦ୍ର ଗଳ୍ପ ଲେଖିଥିଲେ । କିନ୍ତୁ ସବୁଜ ଗ୍ରୁପ୍‌ରେ ବିଶିଷ୍ଟ ଶ୍ରେଷ୍ଠ ଗଳ୍ପ ଲେଖକ ହେଉଛନ୍ତି କାଳନ୍ଦୀଚରଣ ପାଣିଗ୍ରାହୀ ପ୍ରମୁଖ । ଏହା ପରେ ପରେ 'ଆଧୁନିକ' ଓ 'ଅଗତି' ଇତ୍ୟାଦି ପତ୍ରିକାରେ ପୁଣି ନୂତନ ଦୃଷ୍ଟିଭଙ୍ଗୀ ନେଇ କେତେକ ଶ୍ରେଷ୍ଠ ଗଳ୍ପଲେଖକ ବାହାରିଲେ ।

ଓଡ଼ିଆ ସାହିତ୍ୟରେ କ୍ଷୁଦ୍ର ଗଳ୍ପର ଯଥାଯଥ ସମାଲୋଚନାରେ ପ୍ରବୃତ୍ତ ହେବା ପୂର୍ବରୁ ଶ୍ରେଷ୍ଠ ଗଳ୍ପଗୁଡ଼ିକର ଏକତ୍ରୀକରଣର ଅଭାବ ଯଥେଷ୍ଟ ଅନୁଭୂତ ହେଲା । ଭାରତର ଅନ୍ୟାନ୍ୟ ସାହିତ୍ୟରେ ଏହିପରି ସର୍ବଶ୍ରେଷ୍ଠ କ୍ଷୁଦ୍ର ଗଳ୍ପଗୁଡ଼ିକର ସଙ୍କଳନ ପ୍ରକାଶିତ ହୋଇଛି, ତେଣୁ ଓଡ଼ିଆ ସାହିତ୍ୟକ୍ଷେତ୍ରରେ ସେହି ଅଭାବଟି ପୂରଣ କରିବା ପାଇଁ ଆଜି ଏହି 'ସଙ୍କଳନ' ପୁସ୍ତିକା ପ୍ରକାଶନରେ ହାତଦେଲି । ଶ୍ରେଷ୍ଠଗଳ୍ପ ଲେଖକମାନେ, ସେମାନଙ୍କର ଗଳ୍ପଗୁଡ଼ିକୁ ଏହି ପୁସ୍ତିକାରେ ସ୍ଥାନ ଦେବାପାଇଁ ଅନୁମତି ଦେଇଥିବାରୁ ସେମାନଙ୍କୁ ମୁଁ ଆନ୍ତରିକ ଧନ୍ୟବାଦ ଜଣାଉଛି ।

**ଶ୍ରୀ ଚିନ୍ତାମଣି ପାଣିଗ୍ରାହୀ**

# ସୂଚୀପତ୍ର

| ବିଷୟ | ଲେଖକ | ପୃଷ୍ଠା |
|---|---|---|
| ୧ । ବିଜୟା ଉତ୍ସବ | ଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀ ବି. ଏ. | ୧ |
| ୨ । ଟି. ଟି. ଆଇ. | ଶ୍ରୀ ଅନନ୍ତପ୍ରସାଦ ପଣ୍ଡା ବି. ଏ. | ୧୮ |
| ୩ । ହିସାବ ନିକାଶ | ଶ୍ରୀ ଦିବ୍ୟସିଂହ ପାଣିଗ୍ରାହୀ ବି.ଏ.,ବି.ଏଲ୍ | ୨୪ |
| ୪ । ଏତେ ପ୍ରଭେଦ | ଶ୍ରୀ ରାମକୃଷ୍ଣ ନନ୍ଦ ବି.ଏ.,ଡି.ଇଡ୍. | ୪୬ |
| ୫ । ଭ୍ରାନ୍ତି | ଶ୍ରୀ ପ୍ରାଣବନ୍ଧୁ କର ଏମ୍. ଏ. | ୫୧ |
| ୬ । କୃଷ୍ଣଚୂଡ଼ା | ଶ୍ରୀ ସୁରେନ୍ଦ୍ର ମହାନ୍ତି ବି. ଏ. | ୬୩ |
| ୭ । ଦୋକାନଦାର | ଶ୍ରୀ ନିତ୍ୟାନନ୍ଦ ମହାପାତ୍ର | ୭୧ |
| ୮ । ଦଶହରା ଭେଟି | ଶ୍ରୀ ରାଜକିଶୋର ରାୟ ଏମ୍. ଏ. | ୮୩ |
| ୯ । ମଶାଣିର ଫୁଲ | ଶ୍ରୀ ସଚି ରାଉତରାୟ ବି. ଏ. | ୯୫ |
| ୧୦ । ଧୂଳିଆ ବାବା | ୰ ଫକୀରମୋହନ ସେନାପତି | ୧୦୮ |
| ୧୧ । ବନ୍ଦିଣୀ ଜୀବନ | ମାନ୍ୟବର ଶ୍ରୀ ହରେକୃଷ୍ଣ ମହତାବ | ୧୨୦ |

## ବିଜୟା ଉତ୍ସବ

ଘର ଭିତରେ ପଶିଯାଇ ମୁକୁନ୍ଦ ଡାକିଲା, "ନବୁଝି ମାଣିକ, ଏ ଚେରମୂଠାକ, ଭଲ କରି ପାଣିରେ ସିଝା ।"

ମାଣିକ **ଅସି** ତା' ହାତରୁ ଶୁଖିଲା ଚେର ଡାଙ୍ଗଗୁଡ଼ାଏ ନେଇ ପଚାରିଲା, "କେତେ ପାଣି ଦେବି ?"

"ବେଶି ନୁହେଁ, ଅଧସେରେ ଢାଳିବ, ପାଣିଟା ନାଲି ଉଠି ଅସିଲେ ଓହ୍ଲାଇ ପକେଇବୁ । ସେଇ ସିଝା ପାଣିରୁ ଥୋକେ ଲେଖାଁ ଦବାକୁ ହବ । ଅଜ ନେ ଏଇ ନବାତ ଖଣ୍ଡେ, ବେଶି ଶୋଷ ହେଲେ **ଟିକିଏ ଟିକିଏ** ଫଣା କରି ଦବୁ ।"

"ନଧି ମେଢାପ କଣ କହିଲା ? ଭଲ ହୋଇ **ଯିବଟି** ?"
ମାଣିକ ପୁଣି ପଚାରିଲା । ତା' ତୁଣ୍ଡରୁ ଯେମିତି କଥା ବାହାରୁ ନାହିଁ । ଚଉଦ ପୁରି ପନ୍ଦର ପଶିଲାଣି, ଯେ କହିବ ଦଶ ଏଗାରରୁ ବେଶି ନୁହଁ । ଖାଲି ଯାହା ହାଡ଼ ଗୁଡ଼ିଖଣ୍ଡ ହୋଇଛି ।

ମୁକୁନ୍ଦ ମୁରବ୍ବିପଣିଆ ଦେଖେଇ କହିଲା, "ଭଲ ହୋଇ ଯିବ ନା ତ ତୁଷ୍ଟାକୁ ମୁଁ ଏତେ ଧାରିଛୁ ।" ନିଧି ମେହାପ ଅନ୍ଧ ଅଠଣା ପଇସା ପାଇ ଭାରି ଖୁସି । କହିଲା, ତୁ କରୁଛୁ ପରବା ଏ କରନା ପୁଅ । 'ଅଜ୍ଞ ଭଲ ଟାଣୁଆ ପାଚନଟାଏ ଦେଇଛୁ । ନାଡ଼ୀ ତ ଖାସା ଚାଲିଲଣି । ଦେଖିବୁ କାଲି ସକାଳକୁ, ବାପ ତୋର ଫାଡ଼ି ହୁଡ଼ି ହୋଇ ଯେବେ ନ ବସିବ ମୋ ନାଁ ନିଧି ମେହାପ ନୁହଁ ।'

ମାଣିକ ଭଗ ଭଗ ହୋଇ ଔଷଧ ସିଝେଇବାକୁ ଯାଉଥିଲା. ମୁକୁନ୍ଦ ତାକୁ ପଛରୁ ଡାକି କହିଲା, "ଶୁଣ, କାଲି ସକାଳେ ପଥି ଚାରେଟି ଦବାକୁ ବଇଦ କହିଛି । ପୁରୁଣା ଚାଉଳ ନ ହେଲେ ତ ହବ ନା, କଣ କହିବା ?"

ସେ ଖବର ଅବା ମାଣିକ କୁଆଡ଼ୁ ଦବ ! ନିଜରୁଣୀ ଗାଁଟାରେ କାହା ଘରେ ହେଲେ ପୁରୁଣା ଚାଉଳ ଦାଣେ ମିଳିବ ! ଥିଲେ ବି ମୁଣ୍ଡ ପିଟିଲେ କେହି କାଢ଼ିବେ ନାହିଁ । ଟିକଏ ବସିରହି ମୁକୁନ୍ଦ ପୁଣି ଭଉଣୀକି କହିଲା, "ଆଚ୍ଛା ଦେଖିବା, ତୁ ଆଗ ଯା ।"

ଦିନଯାକ ତ ଚୁଲି ଜଳି ନାହିଁ, ନିଆଁ ଅଣିବ କୁଆଡ଼ୁ ? ମାଣିକ କୁଟାଲୁଣ୍ଡାଟିଏ ସଜାଡ଼ି କାହାଘରୁ ନିଆଁ ଟିକଏ ମାଗିବାକୁ ବାହାରିଗଲା । କାଲି ସକାଳେ ପୁରୁଣା ଚାଉଳ କେଉଁଠୁ ଅଣିବ ଭାବି ଭାବି ମୁକୁନ୍ଦ ବାପ ବେମାର ପଡ଼ିଥିବା ଝୁଙ୍ଗି ବଖରାରେ ପଶିଲା । ତାହାର ବାପ ଗୁଣପରଡ଼ା ଦ'ମାସହେଲା କତରୁ ଉଠିବାକୁ ନାହିଁ, ଏଇ ଦ'ମାସ ଭିତରେ ମୁକୁନ୍ଦର ମା ବି ଚାଲି ଯାଇଛି । ତା' ଆଗରୁ ତ ଅଠଦିନ ଛଡ଼ାରେ ତାର ସାନ ଭାଇ ପୋଡ଼ଇ ମରିଗଲେ । କ ରୋଗ ଧରିଲା କେଜାଣି, ଅଗ ଖାଲି ହାତ ଗୋଡ଼ ଫୁଲିଗଲା ।

ଏମିତ ବେଗରେ ତ ଗାଁ ଭିତରୁ ବେଢେ ଲୋକ ମଲେଣି । କିଏ ଜାଣେ କାହାକୁ ଧରିବ, ତାକୁ ବଞ୍ଚେଇବ କିଏ ? ମଣିଷର ତ ଜନ୍ମ ହେଉଛି ମରିବାକୁ, କିଏ ଆଜି ଆଗ ମରୁଚି ଆଉ କିଏ ପଛରେ ।

ତଥାପି ମୁକୁନ୍ଦର ମନ ବାନ୍ଧୁନି ଗୁଡ଼ାଏ ନାହିଁ । ଟିକିଏ ଭଲ କରି ଔଷଧ ପଥ୍ୟ କରିଥିଲେ ସେମାନେ ଆଜି ଜୀଇଥାନ୍ତେ । ସେତେବେଳେ ଘରେ ପଇସାଟିଏ ନ ଥାଏ । ଧାର ଉଧାର ଯାହା କଲା ସେଥିରେ ପଥିଦୋ'ଟି ପାଇଁ ନିଅଣ୍ଟ ।

ଘରଭିତରେ ପଶି ଦେଖିଲା, ବାପ ତାକୁ ହାତ ଠାରି ଡାକୁଚି । ପାଖରେ ଯାଇ ବସିଲାରୁ ଅତି କଷ୍ଟରେ କହିଲା, "ତୁ ମୋ ପାଇଁ ଭାବନା କର ନା । ମୁଁ ଭଲ ହୋଇଯିବି ଯେ ।" ମୁକୁନ୍ଦର ଟିକିଏ ଦମ୍ଭ ଆସିଲା । ହଁ, କାହିଁକି ଭଲ ନ ହବ । ତାର ତ ଗୋଡ଼ ହାତ ଫୁଲି ନାହିଁ—ଦିହରୁ ତବତ ବି ଟିକିଏ ଓହ୍ଲେଇ ଆସିଚି । ଖାଲି ଝାଡ଼ା ବନ୍ଦ ହୋଇଗଲେ ଢେଣିକି ବଇଦ ତ କହୁଚି, ଏଇ ପାଚନ ପାଣିରେ ସବୁ ଗୁଣ ହୋଇଯିବ ।

ମା-ଭାଇଙ୍କ ପାଇଁ ମୁକୁନ୍ଦ ସିନା କିଛି କରି ପାରିଲାନି । ଯାହା ପାରୁ ତା' ହେଉ, ବାପକୁ ନିଶ୍ଚେ ବଞ୍ଚେଇବ । ସେଇମାନଙ୍କୁ ବଞ୍ଚେଇ ରଖିବାକୁ ତ ବାପ ତାର ସବୁତକ ଜମି ବିକି ଦେଇଚି । ଗୁଣ ପରିଡ଼ାର ଗୃହମାଣ ଗୃହଜମି ଗୁର ବର୍ଷ ଆଗେ ଥିଲା । ଛଦସ୍ତା ବର୍ଷ ଯେତେବେଳେ ଓଡ଼ିଶା ସରକାର ଓ ନେତାମାନେ ଏହାକୁ ବଳକା ପ୍ରଦେଶ କହି ବାହାରକୁ ଧାନ ରପ୍ତାନି କରେଇଲେ, ମୁକୁନ୍ଦର ବାପ ଗୁଣ ପରିଡ଼ା ଧାନ କିଣି ପିଲା କବିଲାଙ୍କୁ ବଞ୍ଚେଇବ-

ବୋଲି ଜମିବାକୁ ଆରମ୍ଭ ହେଲା ସେତିକ ବେଳୁଁ । ସେତିକି ବେଳେ ତା'ର ବଡ଼ ଝିଅ ଉମାର ବର ଆଣେଇ ସ୍ୱାମୀ ପିଲା ସାଙ୍ଗରେ ଆସି ଗୋଡ଼ କୁଆଡ଼େ ବାହାରିଗଲା । ଆଜି ଉମା ? ତା ନାଁ ତୁଣ୍ଡରେ ଧର ନାହିଁ । ପିଲା ଯୋଡ଼ିକୁ ଛାତିରେ ଗୁଡ଼ି ସେ ପଶିଲା ହାଣ୍ଡିଶାଳରେ । ବାପ-ଭାଇଙ୍କର ନାଁ ପଡେଇଲା । କାହିଁକି ? ନ ଖାଇ ନ ପିଇ ତ କେତେ ଲୋକ ମଲେ, ଆଜି ବି ମରୁଛନ୍ତି । ତାକୁ କିଏଁ ମରଣ ହେଲା ନାହିଁ । କେତେ ଲୋକ କେତେ କଥା କହନ୍ତି । ଗୁଣ ପରଖ ଛାତିରେ ସବୁ କଥା ଚାପି ଘାଉ ହୋଇ ରହିଥାଏ ।

ଆଜି କଥାରେ ପଡ଼ି ଉମାକଥା ତା'ର ମନେ ପଡ଼ିଗଲା । ମୁକୁନ୍ଦକୁ କେତେବେଳଯାଏଁ ଚାହିଁ ରହି ସେ ପଚାରିଲା, "ଉ—ମା ?" ମୁକୁନ୍ଦର ସେ ବଡ଼ ଭଉଣୀ । ପେଟବାଟଲରେ ସେ ଏଇଯାକ ହେଲା । ତାକୁ ଜହର ଜଣ ମିଳିଲା ନାହିଁ । କୁଆଡ଼େ ସେ ବୋହୂଘରରେ କେଉଁ ବାନରଟି ପାଖେ ଅଛି । କିଏ କହେ ପୁଣି ହାଣ୍ଡିଘରେ ପଶିଲାଣି । ତା' ନାଁ ପଡ଼ିଲେ ମୁକୁନ୍ଦ ଜଳି ପଡ଼ିଲା ଆଟେ । ଇଚ୍ଛା ହୁଏ, ତାକୁ ଆଗରେ ପାଇଲେ ଟିକି ଟିକି କରି କାଟି ପକାନ୍ତା । ବାପ ମୁହଁରୁ ଆଜି ତା'ର ନା ଶୁଣି ମୁକୁନ୍ଦର ଗୋଡ଼ରୁ ମୁଣ୍ଡଯାକେ ଉତ୍ତାପ ଲାଗିଲା ଭଳି ଜଳି ଉଠିଲା । ବେମାର ପଡ଼ି ନ ଥିଲେ ତାକୁ ଆଜି ସେ ଦି'ପଦ ଶୁଣେଇ ଦିଅନ୍ତା ।

ବାପକୁ କିଛି ଜବାବ ନ ଦେଇ ସେ ସାନ ଭଉଣୀକି ଡାକିଲା, "ମାଣିକ, ପାଚନ ପାଣି ହେଲାଣି ।"

"ହଁ, ନଉଚି" କହି ମାଣିକ ଗଡ଼ଣ୍ଡ ପଥର ଗାଟିଆରେ ଆଣି ଥୋଇଲା । ବାପକୁ ଢୋକେ ପିଆଇ ଦେଇ ସେ ବାହାରକୁ ଆସିଲା ।

ଘରଅଡ଼ ଅନ୍ଧାରିଆ ହୋଇଗଲାଣି । ଏ ବର୍ଷ ତ ଶ୍ରାବଣ ମାସରେ ବି ବର୍ଷା ନାହିଁ । ତେବେ ଆଜି ସଞ୍ଜବେଳୁ ମେଘ ଘୋଡ଼ାଇ ବର୍ଷା ଝିପ୍ରି ଝିପ୍ରି ପକାଉଛି । ମାଣିକ ସଳିତା ପୋଡ଼ିଏ ସଜାଡ଼ି ମାଟିଚାଙ୍ଗୁଡ଼ିରେ ଲାଗିଥିବା ଟିକିଏ ତେଲରେ ତାକୁ ଘଷୁଥାଏ । ଦରକାର ହେଲେ ଜାଳିବ । କିରାସିନି ତ ସପନ ହେଲାଣି ଯୁଦ୍ଧ ବଜାରରେ ।

ମୁକୁନ୍ଦ ପଚାରିଲା, "ହାଣ୍ଡିରେ ଆଜି କଣ ଅଛି ?" "ଆଜି କଣ ଥାନ୍ତା, କାଲିର ଗଣ୍ଡାଏ ଶୁଆଁ ପଖାଳ ପଡ଼ିଛି, ଆଣିବି ?" ମାଣିକର ଶୁଖିଲା ମୁହଁରେ ଟିକିଏ ମୁରୁକି ହସ ଦେଖାଦେଇ ଲିଭିଗଲା, ଖିରି ହାଣ୍ଡିରେ ମଜଳା କଡ଼ି ଫୁଟି ଅଧୁ ଅସୁ ହଡ଼ ପଡ଼ିଲା ପରି । ସେ ହସ ଯେ ଥରେ ଦେଖିଛି ଦୁନିଆରେ ତାର ଆଜି କିଛି ହସ ଦେଖିବା ଲୋଡ଼ା ନାହିଁ ।

"ତୁ ସେ ଗଣ୍ଡାକ ଖାଇଦେ । ରାତିଯାକ ଗୁହିଁବାକୁ ପଡ଼ିବ ।"

"ଆଜି ସକାଳେ ମୁଁ ସେଥିରୁ ଅଧେ ଖାଇଥିଲି । ତୁ ପରା ଅପୁରି ଦିନଠୁଁ କିଛି ଖାଇନୁ ?"

"ଚୁପ୍ କର ମିଛୁଆ । ପରିଦିନ ସକାଳେ ଶୁଆଁଯାକ ରାନ୍ଧି ତାହାକୁ ଦେଇଥିଲୁ ?"

ମାଣିକର ମନେ ପଡ଼ିଲା, ସତେ ପରିଦିନ ଶୁଆଁପାଗ କରିଥିଲା । ତିନି ଦିନର ବାସି ପେଜରେ ଖୁଦ ସାରୁପତ୍ର ପକାଇ ତରକାରି କରି ଭାଇକୁ ଦେଇଥିଲା । ସେ ଟିକିଏ ଚିଙ୍କିଯାଇ କହିଲା, "ତୁ କାଲି କିଛି ଖାଇନୁ, ଆଜି ବି କିଛି···"

ନୀଳି ନାଲି ଡୋଳା ଦି'ଟା ବାହାର କରି ମୁକୁନ୍ଦ ତମ୍ବା ଗରଜି ଉଠିଲା, "କିଏ ତତେ କହିଲା ଖାଇନି ? ମୁଁ ଯେତେ-

ବେଳେ ଯାହା ଖାଇଲୁ କଲୁ, ତତେ ସବୁ ଦେଖେଇ କରୁଥିବି କି ? ତୁ କଣ ମୋର ମୁରବୀ—ନା ମତେ ପୋଷୁଚୁ ?

ବାପ ମାଙ୍କ ମୁହଁରୁ ମୁକୁନ୍ଦ କେତେଥର ଶୁଣିଛି ସେ ତାଙ୍କର ପୋଷିଲା ପୁଅ । ଅଳପ କିଛି ତ ନୁହ, ସତର ବର୍ଷ ହେଲାଣି । ତିନି ଚାରି ବର୍ଷ ହେଲା ହଳଯାଳ ସବୁ କାମକୁ ପାରିଲାଣି, ଏବେ ତ ପାଣିବୁହା ମାଟିହଣା—କେଉଁଥିକି ତା'ର ପରବାୟ ନାହିଁ । ବାହାଘର ହେଇସାରିଲାଣି, ମା ବାଣ୍ଟୁଣୀ ଦେଖିବ ଦେଖିବ ବୋଲି ଦେଖି ପାରିଲା ନାହିଁ । ମା ତ ମଲାଣି, ବାପ ବେଗରେ ପଡ଼ିଛି । ମାଣିକ ମାଙ୍କଡ଼ୀଟା କଣ ତାକୁ ଅକଟ କରିବ ? ସେ ମୁରବୀପଣିଆ ଦେଖେଇ କହିଲା, "ମୋ କଥାରେ ଏଣିକି କଥା କହିବୁ ତ ଦେଖିବୁ କଣ କରିବି । ଏଇଟାର ବାର ମାସରେ ତେର ବେଗ । ଫୁଙ୍କିଦେଲେ ଲୁଅଡ଼େ ଉଡ଼ିଯିବ । ତୋ ଭଳି ଛୁଆଟାଏ ହେଲେ ବି ମତେ ଭଲ ଖାଇବାକୁ ଦେଇ ପାରିବେ କି ଲୋ ? ମୁଁ ଧାଣ୍ଡି ହାଟରେ ଚଳିବା ଲୋକ । ମୁଢ଼ି ଚୁଡ଼ା ଯେତେବେଳେ ଯାହା ପାଇଲି ଖାଇଲି । ତୁ ପରା ଅଜା ଖାଇଚୁ ? ଗୁଡ଼ିଏ ଘଣ୍ଟା କଏ ଖାଇଲା ପରି ଦିଶୁଚି—ତୁ, କି ମୁଁ ? ଗଲା ରଜକୁ ବାଗୁଡ଼ି ଖେଳରେ ଘନିଆ ମୋ ପାଖରୁ ଯେଉଁ କଚୁଏ ପାଇଛି—ଅଜାଣାକେ ତା ଅଣ୍ଟାରୁ ପଚିସ ଗଲାଣି ଭଲା ? ଯା ତୁନି ହେଇ, ଯାହା କହୁଚି ଅଜ କର ।"

କାଲିର ଗୁଅଁ ପଖାଳ ଖିଲ ଧରିଥିବଣି, ହଜ ତେତେ, ମୁକୁନ୍ଦ ପଚିଛି ତାକୁ ନ ଖାଇଲା । ସତେ ସେ କି ପରଦିନ ଗୁଅଁ ଯାଉ ଖାଉଥିଲା । ଅଜ ଯେଉଁ ଗୁଡ଼ିଲ ଯୋଗଡ଼ ଅଛି, କାଲି ସକାଳେ ମାଣିକ ସେମିତି ଟିକିଏ ଯାଉ ତା' ପାଇଁ ରଖିଦେବ ।

କେତେ ଅଡ଼େ ଧାଁ ଧପଡ଼ କରୁଛି, ଦି'ଥରେ ସୁଖ ଦିନେ
ପେଟରେ କିଛି ନ ପଡ଼ିଲେ ତା' ଘୋଡ଼ାହାଣ୍ଡ ଚଳିବ କେମିତି ।

ଘର ଭିତରେ ବେଗି ଲୁଚିଗଲା । ଘର ଭଉଣୀ ଦିନେହିଁ
ଯାଇ ବାପଙ୍କୁ ଧରାଧରି କରି ଶେଜରେ କଡ଼ରଇଲେ, ଯଳିତା ଜାଳି
ନବାତପଣା ଠିକ ଏ ବେଳେ । ଦିନେହିଁ ପୁଣି ବାହାରକୁ ଆସିଲେ ।
ମାଠିଆରୁ ପାଣିମୁଢେ ଠେକଟାରେ ଗଡ଼ାଇ ମୁକୁନ୍ଦ ଢକ ଢକ କରି
ଢୋକିଲେ ପିଇଲା । ମାଣିକକୁ ମିଛରେ କହିଲା, "ମୁଢ଼ିଦି'ଟା
ଗୋଟେ ବେଳ ଦେଇ ସାରି ଶୋଷ ହେଉଥିଲା । ତୁ ଏଥର ଯାଇ
ପଖାଳ ଗଣ୍ଡାକ ଖାଇଅ ।" ପାଣିଠାରୁ ବଳି ପଦାର୍ଥ ନାହିଁ ।
ଭୋକ ହଉ ଶୋଷ ହଉ, ମୁଢେ ପିଇଦେଲେ ସବୁ ଥଣ୍ଡା
ପଡ଼ିଯାଏ । ମୁକୁନ୍ଦ ସେ ଜ୍ଞାନଟି ଭଲ କରି ଶିଖିଛି ।

ଦଣ୍ଡକ ଉତ୍ତାରେ ମାଣିକ ହାଣ୍ଡି ସଫା କରି ପଦାକୁ ଆସିଲା,
କହିଲା; "ସେନାଘରେ ଦି ଓଳି ଚଳିବ ତୁଏ ।"

ମୁକୁନ୍ଦ ଏକଦଣ୍ଟେ ମାରି କହିଲା, "ତୁ ଏମିତି ଭାହାଣୀଙ୍କ
ଭଲି ହୋ ନା । ସେନା ଘରେ ଖାଇଲେ ବୋଲି ତୁ କଅଣ ଯାଇ
ମାଗିବୁ ? ମୁଁ ଗୁଣି ପଣ୍ଡାର ପୁଅ, ଜାଣୁ ? ଆଗେ ଲଗିଖାଇବୁଁ
ପିନା, ମାଗି ଖାଇବା ଆମ ଜାତକରେ ନାହିଁ । ଦି'ଓଳି ନ ହେଲା
ପରେ ଆମର ଘରେ ତ ପୁଣି ଓଳିଏ ଚଳୁଛି ହେଉଥିଲା ? ଏବେ
ନ ହେଲେ ଦି' ଦିନେ ଗୁରୁ ଦିନେ ଥରେ ହେଉଛି । ହଉ ଠିକ ଏ
ଥର ଧରୁ, ବାପ ଖାଲି ଭଲ ହେଉ ଦେଖିବୁ, ଓଳିଏ ଛଡ଼ଳା
ହବ କି ନାହିଁ । ଆଜ ସେଠିବ ସମ୍ଭାଳି ନ ପାରୁଛୁ ତେବେ
ଯାଇ ଛତରରେ ପଶ । ଗୋଟାଏ ତ ଯାଇ କୁଆଡ଼େ ମଲା, କହିବ

ନାଁ ପକେଇଲ୍ । ତୁ ଯିବୁ ଯେବେ ଯା । ଏଇଗାଁରେ ତ କେତେ ଦୁଅରେ ସେମିତ ଲଣ୍ଠା ଛଟା ହେଲଣି ।”

ଅମ୍ବିଲ ତୋରାଣୀ ପିଇ ମାଣିକ ବଗ୍ଧୁଗ୍ଧ ଉତଲ୍ ଭାତ ସିନା ମନେ ପଡ଼ିଲ୍ । ସେ ସୁକୁ ସୁକୁ ହେଇ କହିଲ୍, “ତତେ ପଦେ କହିଲ୍ ତୁଣି ତୁ ଦଶ ପଦ କହି ସବୁବେଳେ ମତେ ବକୁଚୁ ।”

“ତୁ କାହିଁକ ଯେନାଘର ଛେନାଘର କଥା କାଢ଼ୁଚୁ ? ଆମ ଘରେ ପେଜ ତୋରାଣୀ ଯାହା ଅଛି, ସେଇ ଆମର ଖିଲ୍ସ ଶାକର୍ । ଏତେ ଲୋକଙ୍କ କଥାରେ ଆମର କଣ ଯାଏ ଆସେ । କିଏ କଣ ଆମକୁ ଦାନ୍ଦେଉଚ ? ଯା ଏଥର ଶୋଇବୁ । ମତେ ଏବୁଣି ନିଦ ହବନି ମୁଁ ଜଗିବି । ନିଦ ଆସିଲେ ତତେ ଉଠେଇ ଦେବି ।”

ସତେ ସେ ମାଣିକ ଉପରେ ରାଗୁଚ କାହିଁକି । ପିଲାଟାର ଛନ୍ଦକ ଗଣ୍ଡିଏ ଖାଇବାକୁ ଅବା ମନ ହଉଥିବ । କେତେବେଳେ ମୁଅଁ ଟାଏ କି କୋରାଟାଏ କିଛି ନ ପାଇଲା ନାହିଁ । ସେ ନିଚୋଳ ସିନା ତନି ଗ୍ଧଗ୍ଧ ଦନ କିଛି ନ ଖାଇ ରହି ଯାଇଚ । ମରଦ ପୁଅ—ତା’ ସାଙ୍ଗରେ କେତେ କ ସେମିତ ରହୁଛନ୍ତି । ଏ ତ କିଛି ନୂଆ କଥା ନୁହଁ, ତା’ ବୋଲି ପିଲା ଭଉଣୀଟା, ନ ଖାଇ ନ ପିଇ କେତେ କଲବଲ ହବ ।

ହଁ, କାଲି ସକାଳେ ବାପପାଇଁ ଦ’ଟା ପଥି ରନ୍ଧା ହେବ ।

ପୁରୁଣା ଗ୍ଧଉଳ ଅସିବ କୁଆଡ଼ୁ ? ପୁଣି ସେଇ ନୂଆପଡ଼ା ବାଣ୍ଟିଆସାଆନ୍ତ ଦୁଆରକୁ ଯିବ ? ତା’ର ଘରେ ମୁଲ ଲାଗି ମୁକୁନ୍ଦ ପ୍ରଚ୍ଛୁ ପାଖଟଙ୍କା ଅଣିଚ । ଅଜ ଭାଇ ମଲ୍, କାଲି ମା ଶୁଧିଅ,

ଏବେ ପୁଣି ବାପର ଦାହଦୁଃଖ ବୋଲି ମୁକୁନ୍ଦ ଯାଇ ନ ପାରି କେତେ ଦିନ ତାର କାମ ପଡ଼ିଆ ହେଲାଣି । ତା' ଦୁଆରେ ଯାଇ ମୁହଁ ଦେଖେଇବ କେମିତି ? ଆଉ କଣ ଯୋଗାଡ଼ର ? ତାକୁ ଭୁଣ୍ଡ ସବେଇ ଲାଭ କଣ ? ସେଠି ତ ସବୁବେଳେ ନାହିଁ ପଦ ଛଡ଼ା ଆଉ କିଛି ନାହିଁ; ଘରେ ସବୁ ନିତ ତା' ପିଲାଏ ଚୂଡ଼ା ଶିକା ଖାଉଛନ୍ତି । ବୋଉର ଦାହଦୁଃଖରେ ପଡ଼ିଥିଲାବେଳେ ମୁକୁନ୍ଦ ଟଙ୍କା ଟିକିଏ ମାଗିଲାରୁ ନାହିଁ କରିଦେଲା । ପଇସା ଯାଚିଲାରୁ ପୁଣି କେତେ ବେଇମାନ କଲା । ଛି, ତା' ଦୁଆରକୁ ଆଉ ଯିବ ସେ ।

ହଁ, ଭଲ କଥା ମନେ ପଡ଼ିଲା—ମଣିଜଙ୍ଗା ସାଧୁମଣ୍ଡା ପାଖେ ଅଛି ବୋଲି କିଏ କହୁଥିଲା । ଦି' କୋଶ ବାଟ । ରାତିରୁ ଉଠି ନ ଗଲେ ହେବ ନାହିଁ । ତାହା ହେଉ ଯିବାକୁ ପଡ଼ିବ । ନଇ-ପାରିଆ । ଫେରୁ ଫେରୁ ଜଲୁର ହେବ ।

ମାଣିକକୁ ଡାକିଲା, "ଠଣା ଭିତରୁ ପଇସା ପୁଡ଼ାଟା ଆଣିଲୁ ।" ବୋଉର କନା ଖଣ୍ଡରେ ଗଣ୍ଠି ପଡ଼ିଥିବା ପୁଡ଼ାଟି ଆଣି ମାଣିକ ଥୋଇଲା । ଗଣି ଦେଖିଲା, ଟଙ୍କାକିଆ କାଗଜ ନୋଟ ଦି'ଖଣ୍ଡ ଆଉ ନ' ଅଣାର ରେଜା । ବାଈଧା ମାଉ ପାଖରୁ ଯେଉଁ ପାଞ୍ଚ ଟଙ୍କା ଆଣିଥିଲା ସେଥିରୁ ଏତିକି ବଳିଛି ।

ମୁକୁନ୍ଦ କହିଲା—"ହଉ ଏ ଦି'ଖଣ୍ଡ କାଗଜ ସେମିତି ଠଣା ଭିତରେ ରଖି ଦେ । ଠଣା ମୁହଁଟା ଭଲ କରି ସ୍ୱଢ଼େଇରେ ମୁଦିବୁ । ନଇଲେ ମୂଷା ନେଇଗଲେ କି ଜଇ ଲଗିଲେ ପାଣ୍ଡି ବୁଡ଼ି ଯିବତ । ଆଉ ଏ ନ'ଣାଟି ନେଇ ଅନ୍ଧାରୁଆରୁ ମୁଁ ମଣିଜଙ୍ଗା ବାହାରି ଯିବ । ଦି'କୋଶ ବାଟ, ପୁଣି ନଇପାରିଆ । କେବେ ସେଠେ

ସହଳ ଘାରିବ ପୁରୁଣା ଚାଉଳ ଗଣ୍ଡାଏ ଧରି ଫେରିବ । ବାପାଙ୍କୁ କାଲି ପଥି ଦୋ'ଟି ଦବା ।"

ମାଣିକ କହିଲା, "ତୁ କେତେବେଳକୁ ଫେରିବୁ, କେଜାଣି । ସେଥର ତ ଚାଉଳ ଠିକଣାଠାରୁ ଆଣିବୁ ବୋଲି ଦନ୍ଦ ଘଣ୍ଟାଏ ବସେଇ ଦେଲୁ ।"

"ଅରେ, ସେ ହେଲା କଣ୍ଟ୍ରୋଲ ଚାଉଳ । ଲୋକ ତ ଦ' ଦନ ଦନ ଯାଏ ପଡ଼ି ପଡ଼ି ଫେରି ଆସିଲେ । ଥରେ ଯାଇ ଦେଖନ୍ତୁ କି କେତେ ଜାଣନ୍ତୁ । କହେ କି ଦ'ଶହ ଲୋକ ଧାଡ଼ିମୁଣ୍ଡିଆ ଠିଆ ହୋଇ ରହିଥିବେ । ପାଳି ପାଳି ଯେତେବେଳେ ପଡ଼ିବ, ତାକୁ ଯାଇଁ ସେତେବେଳେ ମିଳିବ । ଧାଡ଼ି ଭିତରେ ଛୁଡ଼ାହେବା ଖାଲି ସହଜ ପଡ଼ିଛି କି । ମୁଁ ବୋଲି କେତେ ଲୋକଙ୍କୁ ଠେଲି ପେଲି ଶେଷରେ ଯାଇ ଆଣିଲି । ଏ ତ କିନ୍ତୁ କଣ୍ଟ୍ରୋଲ ଚାଉଳ ନୁହଁ । ସାଧୁଶଣ୍ଡା ଦୋକାନରୁ ପଇସା ଦେଇ କିଣି ଆଣିବା କଥା । ହଁ, ଖବରଦାର । ତୁ ଆଜ କାଲି ସକାଳେ ଶୁଆଁ ଧାନ ଝାଡ଼ିବାକୁ ଯିବୁନାହିଁ । ବାପ ପାଖେ ଖାସ୍ ଜଗି ରହିବୁ ।"

ମାଣିକ ରୋଜ ସକାଳେ ବାଉଁଶ ପାଛିଆଟାଏ ଧରି ଶୁଆଁ ଧାନ ଝାଡ଼ିବାକୁ ଯାଏ । ତା' ଆଗରୁ ବି ଦଳ ଦଳ ପିଲା ମାଇପେ ଅଣ୍ଟାଏ ପାଣିରେ ପଶି ଶୁଆଁ ଝାଡ଼ିବାରେ ଲାଗିଥାନ୍ତି । ସେ ଯେତେ ଆଗକୁ ଯାଏ, ସେତେ ବେଶି ଧାନ ଆଣେ । ପୁରା ମାସରେ ସାଲିଙ୍କୁ ଯାହା ଯା ଧାନ ମିଳେ, ଗଣଣା ସାହୁକାରଙ୍କୁ ଦବାରେ ତ ସେଥିରୁ ଅଧେ କି ଅଧରୁ ବେଶି ବାହାରି ହୋଇଯାଏ । ବାକି ଯାହା ବଳେ, ସେଥିରୁ ଲଙ୍ଗାଳିଟା କୁଣ୍ଡିଆଁ ମଞ୍ଜର, ପୁନିଅ ପଡ଼ିବ ଖରଚ ପାଇଁ

ଘର ଖରଚକୁ ବା ରହେ କେତେ ? ଅମ୍ଭମାନେ ଯେବେ ଭଲ ଅମ୍ଳ ବଢ଼ୁଲ, ସେଥିରେ ବି ମାସେ ପନ୍ଦର ଦିନ ଚଳିଯାଏ । ନହେଲେ କଲମ୍ବ କି ସଜନା ସାରୁମୁଣ୍ଡା କି ଗେଣ୍ଡା କୋଚଅ ଯାହାକୁ ଯେମନ୍ତ ମିଳିଲା, ସେଥିରେ ଚଳିଗଲା । ଶ୍ରାବଣ ଶେଷୁଅ ବେଳକୁ ସବୁରି ଘର ତ ଖାଲି । ସେତେବେଳେ ଏଇ ଶୁଅଁ ଧାନ ଯାହା ଅଣ୍ଟ ଚଳିଯାଏ । ଏବେ ତ ଜାଣି ହେଲ ପଡ଼ୁଛି । ହେଲେ ଏଇ ଶୁଅଁ ଧାନ ଦି'ମାସ ହେଲା ଯକ୍ଷପୁର ଲୋକଙ୍କୁ ବଞ୍ଚେଇ ରଖିଛି । ରାତି ନ ପାହୁଁ ପଚାଳି ପର ମଣିଷ ଶୁଅଁ ଝାଡ଼ିବାରେ ଲାଗିଛନ୍ତି । ଗୋଟାଏ ପାଣି କୁହୁଡ଼ି ଗୁଦାରପର ତାଙ୍କୁ ଘୋଡ଼େଇ ପକେଇଛି । ତା'ର ଭିତରେ ତାହା ଦିହକୁ ଫାଳେ ଦିଶୁଛି, ତାହାର ହାତଟାଏ ଦିଶୁଛି ତ ମୁଣ୍ଡ ଦିଶୁ ନାହିଁ । ଶହ ଶହ ବାଉଁଶ ପାଛିଆ ଏପାଖରୁ ସେପାଖ ବୁଲିଅସେ ଶୂନ୍ୟରେ ଭାସିଲାଭଳି । ସତେ ଯେମିତି ଖାଲି ପାଛିଆ ଗୁଡ଼ାଏ କୁହୁଡ଼ି ଭିତରେ ଦୋଳି ଖେଳୁଛି, ମଣିଷ ମାଇପେ କେହି ନାହାନ୍ତି ।

ମାଣିକ ଜାନିଟି ପାରି ଏକୁଣ୍ଡି ବନ୍ଧ ପାଖରେ ଶୋଇପଡ଼ିଲା । ମୁକୁନ୍ଦ ତାକୁ ଗୁହାଁ କେତେ କଥା ଭାବୁଥାଏ । ଏଇ ଝାଡ଼ ଗୁହାର ଖଣ୍ଡେ ଟଙ୍କା ମାଣିକ ବାଗୁଲି ନେଇ ସକାଳେ ତାଙ୍କର କୁହୁଡ଼ିର ଶୁଅଁ ଘୋଟେଇବାକୁ ଯାଉଛି । ବାଣ୍ଟି ସାହୁ ଘରେ ନୌକରୀ ପଣ କରେ ସେ ଅବା ତାହାକୁ ପୋଷି ପାରିଲା । ଦିନ କେତୁଟା ସେ ଘରେ ବସିଗଲା ବୋଲି ସବୁ ଅଡ଼ୁ ନାଅଣ୍ଟ ଧରିଲଣି ।

ସକାଳୁ ମାଣିକ ଉଠି ଦେଖିଲା, କେତେ ଆଗରୁ ମୁକୁନ୍ଦ ପୁଞ୍ଜୁଣୀ ରୁଜଳ ଅଣିବାକୁ ବାହାରି ଯାଇଛି; ତା' ଦେହଟା କମିତ

ଝରଝର ଲାଗୁଥାଏ । ଉଠି ବସିଲା, ମୁଣ୍ଡଟା ଭାରି ଲାଗୁଛି । ପୁଣି ଟିକିଏ ଗଡ଼ିଗଲା । ଏମିତି କେତେ ଥର ତା'ର ଦହେ ଦହେ ଜର ଆସି ଚାଲିଯାଏ, କାହାରିକି କହେ ନାହିଁ । ବେଶି କମ୍ପ ହେଲେ ଧାନଶୁଖା ହେଁସଖଣ୍ଡ ଘୋଡ଼ି ହୋଇ ଘଡ଼ିଏ ପହରେ ପଡ଼ିଯାଏ । ପୁଣି ଉଠି ଘର କାମରେ ଲାଗେ । ଆଜି ବି ସେମିତି ଉଠି ଘର ଭିତରକୁ ଗଲା । ବାପ ପାଖରେ ବସି ମୁଣ୍ଡ ଅଉଁସିଲା । ବାପର ଆଖି ମୁହଁରେ ପାଣିହାତ ମାରି ନିଜ କାନିରେ ପୋଛିଦେଇ ପଚାରିଲା; "ପଣା ଟିକିଏ ଆଣିବି ?" ଗୁଣ ପରଡ଼ାର ଆଖି ଯୋଡ଼ିକ କେଉଁ କୋରଡ଼କୁ ପଶି ଯାଇଛି । ସେ ହାତଟି ଉଠାଇ ଝିଅର ମୁଣ୍ଡ ଉପରେ ରଖିଲା । କଣ କହିବ ବୋଲି ଓଠ ଗୋଟା କରି କହି ପାରିଲା ନାହିଁ । ମାଣିକ ବୁଝିଲା, ସେ ମୁକୁନ୍ଦକୁ ଖୋଜୁଛି । କହିଲା, "ଭାଇ ପୁରୁଣା ଚହଳ ପେଲି ଯାଇଛି, ଏଇ ନାଗେ ଆସିବ ।" ତିନି ଦିନ ହେଲା ବାପ ଭଲକରି କଥା କହିପାରୁ ନାହିଁ । ପଥି ଗଣ୍ଡିଏ ପେଟରେ ପଡ଼ିଲେ କଥା କହିବ ।

ପୁରୁଣା ଚହଳ ଧରି ମୁକୁନ୍ଦ ଫେରୁ ଫେରୁ ଦିନ ଦି'ପହର । ନଇପାରେ ଥି, ନଇଲେ କେତେ ଆଗରୁ ଆସି ପହଞ୍ଚିଥାନ୍ତା । ଅଣ୍ଟାଏ କାଦୁଅ ପଙ୍କରେ ଚାଲି ଚାଲି ଗାଁ ମୁଣ୍ଡ ପୋଖରୀ କୁଠରେ ଗୋଡ଼ ଧୋଉଛି, କିଏ ଜଣେ କହିଲା, "ସଫାସୁତୁରା ଘରେ ହବୁ, ତୋ ବାପ ତେଣେ ପରା ଡାକୁଛି ।"

ମୁହଁ ଟେକି ଚାହିଁଲା ତାଙ୍କ ପଡ଼ିଶା ଘନିଆ । ଗଲା ରଜ ଡାବୁଡ଼ି ଖେଳରେ ଏଇ ଘନିଆକୁ ସେ କଚୁଏ ଦେଇଥିଲା । ସେଇ ରାଗରେ ସେ କହୁଥିବ । ମନରେ ପରୁଆ ଆସିଲା ନାହିଁ ।

ହେଲେ ତାର ଗୋଡ଼ଧୂଆ ସେତକରେ ରହିଲା । ପଗ୍ଭରିଲା, "ମିଛ କହୁଚୁ ।"

"ମିଛ କି ସତ ଘରକୁ ଗଲେ ଜାଣିବୁ ।" କହିଦେଇ ଘନିଆ ଗାଈ ଚରେଇବାକୁ ଗଲା । ମୁକୁନ୍ଦ ତାକୁ ପଛରୁ ଡାକିଲା, "ଭାଇ, ବାଗୁଡ଼ି ଖେଳ ଦନ୍ତୁ ଖଗିଚୁକି ? ସବୁ ମୋ ଦୋଷ ।" ଘନିଆ ବୁଢ଼ୀ ଗାଈଟାକୁ ଠେଲି ଠେଲି ପଛକୁ ନ ଗ୍ଭହିଁ କହିଲା, "ଅବେ ନାହିଁ ମ, ଅଗ ଘରକୁ ଯା ।"

ଘନିଆ କଥାରେ ତା'ର ଗୋଡ଼ ହାତ ଢୋଲ ମାରିଗଲା ! ଅକାଶଟା ତଳକୁ ଖସି ପୃଥିବୀଟା ଉପରକୁ ଉଠିଗଲା ଭଳି ଲାଗିଲା ! ଦୁଆର ମୁହଁରେ ଗୋଡ଼ ଦେଇଛି କି ନାହିଁ, ଶୁଣିଲା—ମାଣିଭଉଟା "ବାପା ଲୋ ! ବାପା ଲୋ !" ରଡ଼ି ଛାଡ଼ୁଛି । ଘର ଭିତରକୁ ଆଉ ତାର ଗୋଡ଼ ଚଳିଲା ନାହିଁ । ପଥିଗ୍ଭଉଳ ବନ୍ଧା ହୋଇଥିବା ଗାମୁଛାଟା ପକେଇ ଦେଇ ସେଇଠି ବସିପଡ଼ିଲା ।

ପଥି ଗ୍ଭଉଳରେ ବାପର ଶ୍ରାଦ୍ଧକାମ ହେଲା । ବ୍ରାହ୍ମଣକୁ ଡାକି ଗୋଟିଏ ଟଙ୍କାରେ ଯାହା ପାରିଲା ସେତିକି କଲା । ଏ କାଳରେ କିଏ ଅବା ଧାଇ ଭାତ ଦେଉଚି ଯେ, ତାକୁ ବସି ଖୁଣିବେ । କମିଉ ବାପାକୁ ଶୁଧିଅ ହେଲା କଣ କଲା, କିନ୍ତୁ ତାର ହେଉ ହେଉ ନ ଥାଏ । ବାଣ୍ଟିଆସାଉ ଘରେ କାମ କରି ବାପ ଭଉଣୀକି ପୋଷିବ, ମାଣିକ ନାତ ଓଳାଏ ଲେଖା ତଉଲ ଗ୍ଭଉ ବାପକୁ ପରଷିବ ନାକେ ଖାଇବ, କେତେକଣ ବଗ୍ଭରିଥିଲା । ସବୁ ଗୋଳମାଳ ହୋଇ-ଗଲା । ବୁଦ୍ଧିବାଟ କିଛି ତାକୁ କାହିଁ ଦିଶୁ ନାହିଁ । ସବୁବେଳେ ଖାଲି ମନେ ପଡ଼ୁଚି କେହି ତ କାହିଁ ବଞ୍ଚି ନାହିଁ । କେଡ଼େବେଗି

ସବୁ ମରି ଯାଉଛନ୍ତି । ସେ କଣ ଜେତେ ବଞ୍ଚିବ ନାହିଁ ।
ଗୋଟାଏ ବୁଢ଼ା ଭିକାରୀ ରହି ରହି ଭଙ୍ଗା ଗଳାରେ ପଦେ ନେଗାଁ
ଗୀତ ବୋଲୁଥାଏ, "ମିଛ ମାୟାରେ ପଡ଼ି ହେଲ ନଡ଼ ବଡ଼
ନଡ଼ ବଡ଼ ।" ଶେଷରେ ଖଣ୍ଡେ ଭଙ୍ଗା ଖଞ୍ଜଣୀରେ ଟିକିଏ ହାତ
ମାରିଦିଏ । ଇସ୍କୁଲ ମାଷ୍ଟର କେନାଘର ପିଣ୍ଡାରେ ବସି ଗପ
କରୁଥାନ୍ତି—ଯୁଦ୍ଧ ସରି ଆସିଲାଣି, ଜାପାନ ବଳେ ହାରିଗଲେ ଧାନ
ଚାଉଳ ପୁଣି ଶସ୍ତା ହେବ ଯେ ।

ଆଜ କେବେ ଶସ୍ତା ହେବ ? ସେତେବେଳକୁ ମାଣିକଟା
ବଞ୍ଚିଥିଲେ ସିନା; ତା'ଦେହ ତ ଜାହିଁକି ବେଶି ବେଶି ଖରାପ
ହେଉଛି । ଖାଲି ଭୁଡ଼ାଭଜା ଦ'ଟା ଗୁଣ୍ଡିବେଇ କେତେ ଦିନ
ବଞ୍ଚିବ ? ଓଳିଏ ଚାଉଳ ଭାତ ଖାଇଲେ ଟିକିଏ ଅବା ଟାଣ
ହୁଅନ୍ତା; ସେଇ ପାଞ୍ଚଟି ଟଙ୍କାରୁ ଆଜ ତ ଗୋଟିଏ ବାକି ଅଛି ।
ମୁକୁନ୍ଦ ସେତକ ଧରି ଧାନ କିଣି ବାହାରିଲା । ଧାନତକ ମାଣିକ
ପିଠା ବର୍ଷ ବାଣ୍ଟୁଆସାଜ କାମରେ ସେ ଲଗିବ । ଟଙ୍କାକର ଧାନରେ
ତ ମାଣିକର କେତେଦିନ ଚଳିଯିବ । ପୁଣି ସାହୁଘରୁ ତାକୁ
ପାହ୍ୟା ପଡ଼ି ମିଳିବ, ସେଥିରେ ଭାଇ ଭଉଣୀଙ୍କର ଅଭାବ ହେବ
ଜାହିଁକି ?

ଟଙ୍କାଟି ଧରି ମୁକୁନ୍ଦ ଧାନ କିଣି ବାହାରିଲା । ଧାନ ଟଙ୍କାକର
ବା ପାଖରେ ମିଳୁଛି କୁଆଡ଼ୁ । କେତେ ଗାଁ ବୁଲିବାକୁ ହେବ,
କେତେ ଦୁଆରେ ନେହୁରା ହେବାକୁ ପଡ଼ିବ । ହେଲା ଏବେ ।
ମେତ କଛି ନାଜ ପାଇଁ କରୁନାହିଁ, ମାଣିକ ପାଇଁ । ମୁକୁନ୍ଦ ଥାଉଁ
ଥାଉଁ ତା'ର ସାନ ଭଉଣୀଟା କଣ ଉତରରେ ପଶିବ ? ଦିନ

କେଜାଣି ସେ ତାଙ୍କୁ ଚଳେଇନେଇ ପାରିବ ନାହିଁ ? ଇସ୍କୁଲ ମାଷ୍ଟର ତ କହୁଛନ୍ତି ଯୁଦ୍ଧ ସରିଅସିଲଣି । ଏଣିକି ଧାନଗୁଡ଼ାକ ଶସ୍ତା ହେବ । ସେ ଯାକେ ମୁକୁନ୍ଦ ଟିକିଏ ଅଣ୍ଟା ନ ଭିଡ଼ିଲେ ଚଳିବ କେମିତି ?

ଗାଁ ମଶାଣି ବାଟରେ ଅଖିରେ ପଡ଼ିଲା, ମଣିଷ ହାଡ଼ରେ ସେଠି ଆଉ ଜାଗା ନାହିଁ । ଏହି ହାଡ଼ ଗଦା ଭିତରୁ କିଏ ତାର ବାପ ମା ଭାଇଙ୍କର ହୋଇଥିବ । କେତେ ମୁଣ୍ଡ ଦେହରୁ ଅଲଗା ହୋଇ ଦୂରରେ ଗଡ଼ୁଛି । ଅଖି ନାକ ଯେଉଁଠି ଥିଲା ସେଠି ଖାଲି ଗୋଟାଏ ନେଳା ଗାତ । ଓଠ ନ ଥିବା ଦାନ୍ତଗୁଡ଼ା ବାହାରି ପଡ଼ି କି ଭୟାନକ ଦିଶୁଛି । ପଞ୍ଜରା ହାଡ଼ ମଝିରେ ପେଟ ଅନ୍ତ କିଛି ନାହିଁ ।

ସମସ୍ତେ ଜଣେ ଏଇ ହାଡ଼ ଗଦାରେ ମିଶିଯିବେ, ଆଉ କିଛି ରହିବ ନାହିଁ । ରହିବ ନାହିଁ କିମିତି—ତାର ବାପ ମା ଭାଇ ସିନା ଗଲେ; ଏବେ ସେ ତ ଅଛି । ପୁଣି ମାଣିକ ବି ଅଛି । ସେ ମିବାର ଯାଇଛନ୍ତି ସିନା, ପୃଥିବୀ ଗୋଟାକ ତ ସେମିତ ରହିଛି । ବଞ୍ଚିଥିବା-ଯାକେ ତ ସବୁ ଅଛି, ନାହିଁ କିମିତି ? ମୁକୁନ୍ଦର ଗୋଡ଼ ଯାହା ଧୀରେ ଧୀରେ ଚାଲୁଥିଲା, ଟିକିଏ ଖରହେଲା । ଅଖା ଝୋଟଟାକୁ ଧରି ଆଉ ବି କେତେ ମରଦ ମାଇପେ ସେଇ ବାଟେ ଗ୍ଲଲିଆନ୍ତି ଧାନ କିଣିବା ପାଇଁ । ମୁକୁନ୍ଦ ତାଙ୍କର ସାଥି ଧରି ଗ୍ଲଲିଲା ।

ଜଣେ କହିଲା, "କୁଣ୍ଡପୁର ପାକ କୁଅଡ଼େ ଖଣି ଭିତରେ ଧାନ ପୋତିଛି । ତା'ର ଘରକୁ ମିବା-ଗ୍ଲଲ ।"

ଅଉ ଜଣେ କହିଲା, "ସମସ୍ତେ ଜଣଙ୍କ ଦୁଆରକୁ ଗଲେ ସେ ତ ଘଉଡ଼ି ଦବ ।"

ମୁକୁନ୍ଦକୁ କୁଶପୁର ଟିକଏ ପାଖ ପଡ଼ୁଥାନ୍ତା । ଏ କଥା ଶୁଣି ସେ ବାଟ ଭାଙ୍ଗିଲା । ପୁଣି ସେଇ ଦ କୋଶ ବାଟ ଚାଲି ଚାଲି ମଣିଜଙ୍ଗା ସାଧୁପଣ୍ଡା ଘରକୁ ଯିବ । ସାହସ ପାଉ ନ ଥାଏ । ଅଡୁର ଦ'ଜଣଙ୍କ ସାଥି କରି ଚାଲିଲା ।

ଟଙ୍କାଟିକର ଧାନ ମୁଣ୍ଡାଇ ମୁକୁନ୍ଦ ମଣିଜଙ୍ଗାରୁ ବାହାରିଲା । ନଈ ପାରି ହେଲାବେଳକୁ ଝାଉଁଳେଇଟି ପଡ଼ୁଛି । ବାଟ ଦ'କୋଶ ଯାଇ ଆସିବାକୁ ଦଣ୍ଡଟାଏ ବଢିଗଲାଣି । ପେଟଟା ଗୁରାଣ୍ଡି ହୋଇ ଅଇ ଦେଖଉଛି । ସେ ଚାରିଖୋଜ ଚାଲି ଟିକିଏ ଥକ୍କା ମାରି ପୁଣି ଚାଲେ । ମଝିରେ ମଝିରେ ମେଘୁଆ ଖରା ତାକୁ ଫଟେଇ ଦଉଛି । ଆଉ ଖଣ୍ଡେ ଗଡ଼ିଆର ପାରହେଲେ ତାଙ୍କ ଗାଁ ପଡ଼ିବ । ଗାଁ ମଶାଣି-ମୁଣ୍ଡ ବରଗଛଟା ତ ହୋଇ ଦଶିଲାଣି ! ତଳଉଆରୁ ପାଣି ମୁନ୍ଦାଏ ପିଇଲା । ମାଣିକ ଭାଣ୍ଡଠଣୁ ଓଳିଏ ଉଦର ବାନ୍ଧିବ ।

ପାଣି ପିଇ ମୁକୁନ୍ଦ ଆଉ ସମ୍ଭାଳି ପାରିଲା ନାହିଁ । ଭକ ଭକ ବାନ୍ତି ହୋଇଗଲା । ଧାନ ବୁଜୁଲାଟି ହାଡ଼ ଉପରେ ରଖି ଟିକିଏ ଅଟକି ପଡ଼ିଲା । ପୁଣି ମୁଣ୍ଡରେ ଥୋଇ ସେ ଧୀରେ ଧୀରେ ଚାଲିଲା । ଗାଁ ତ ଏଥର ଡାକେ ବାଟ । ଧାନ କିଆରୁ ବନ୍ଧ ଉପରକୁ ଉଠିଲା । ଯେତେବେଳେ ସେ ଗୋଟାଏ ଗୋଡ଼ ବନ୍ଧ ଉପରେ ଥୋଇ ଆର ଗୋଡ଼ଟି ତଳୁ ଉଠାଇ ପାରିଲା ନାହିଁ । ଧାନ ବୁଜୁଲାଟି ମୁଣ୍ଡରୁ ଖସି ବନ୍ଧ ଉପରେ ପଡ଼ିଲା । ପୁଣି ଆସିଲା ଅଇ ଉପରେ ଅଇ । କାହିଁ କୁଆଡ଼େ ଦିଶିଲା ନାହିଁ, ଯାହାକୁ ଦେଖିଲେ ମାଣିକ ପାଖକୁ ଖବର ଦିଅନ୍ତା । ଧାନ କିଆରୁ ଥଣ୍ଡା ପବନ ଆସି ତା'ର ଦେହରେ ମୁହଁରେ ଖେଳିଲା । ଖଣ୍ଡେ ଚଲା ମେଘ କୁଆଡ଼ୁ ଝୁପୁ ଝୁପୁ କରି ଚାରିଚୋପା ପାଣି ବରଷି ଦେଇଗଲା । ମୁକୁନ୍ଦ ମୁହଁ ଟେକି ଗାଁ ଆଡ଼କୁ ଥରେ

ଗୁହ୍ଳିଲ ଧାନ ବୁଜୁଳାଟି ଉପରେ ମୁଣ୍ଡ ରଖି ପୁଣି ପଡ଼ିଗଲା । ଅଜ ପାରିଲା ନାହିଁ । ସେହିଠାରେ ତାର ସବୁ ଦିନ ପାଇଁ ବାଂଚିଲା ସରିଗଲା ।

ମୂଲିଆମାନେ ବିଲରୁ ଫେରି ଗାଁ ଭିତରେ ଖବର କଲେ । ମାଣିକର ଜର ଛାଡ଼ିଗଲା । ସେ ଉଦ୍ଧତ ଗ୍ରନ୍ଥିବ ବୋଲି ଧାନ ବୁଜୁଳାଟି ପାଇଲା । ଖିଇକୁ ଅଜ ପାରିଲା ନାହିଁ ।

ସେହି ଦିନ ଥାନା ଚଉକିଆ ଆସି ଗାଁ ଭିତରେ ଖବର କଲା. ଜାପାନ ଏଥର ହାରିଛନ୍ତି, ସମସ୍ତେ ଦୁଆରେ ଅମ୍ବଡାଳ ବାନ୍ଧି ବିଜୟ୍ଲ ଉତ୍ସବ ପାଳିବେ । ଥାନାରେ କାଲି ଇସ୍କୁଲ ପିଲାଙ୍କୁ ମିଠେଇ ବଣ୍ଟା ହେବ ।

ତେବେ ସବୁଦିନଠାରୁ ବେଶି ବିଜୟ୍ଲ ଉତ୍ସବ ପାଳିଲା ମୁକୁନ୍ଦ । ମଣିଷ କାନ୍ଧରେ ବୁହା ହୋଇ ଯିବାର ଭାଗ୍ୟ ଏଇ ତାହାର ପ୍ରଥମ, ଏଇ ତାହାର ଶେଷ ।

ଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀ

# ଟି. ଟି. ଆଇ.

ଶ୍ରାବଣର ବର୍ଷାମୁଖର ସନ୍ଧ୍ୟା । ଆକାଶରେ କଳାମେଘର ମୋଟା ପରଦା । ଦିନ ସାରା ଟିପି ଟିପି ବର୍ଷା ଚାଲିଛି ଅବିରାମ ଗତିରେ । କେତେବେଳେ ବା ଟିକିଏ ଜୋରରେ ବର୍ଷା ହୋଇ ଯାଉଛି । ଦିନ ଗୋଟାଏ ବେଳକୁ ଫେରି ଆସିଥାଏଁ ମୋର ଡଉଟିରୁ । ଖାଇସାରି ବିଛଣାରେ ଟିକିଏ ନାକୁ ଗଡ଼େଇ ପଡ଼େଇ ଦେଲି, କିନ୍ତୁ ଆଖିକି ନିଦ ଆସିଲା ନାହିଁ । ଗୀତା, ଭାଗବତ, ବାଇମାହାନ୍ତି ପାଞ୍ଜି, ମାମୁଁ ଅଦ ପର୍ଯ୍ୟନ୍ତ ଯେଉଁ ଦୁଇ ଚାରିଖଣ୍ଡ ବହି ମୁଣ୍ଡପାଖ ଛୋଟିଆ ଆଲମାରିରେ ଜମା ହୋଇଥିଲା ସେ ସବୁ ଆଣି ଗୋଟାକୁଗୋଟା ଓଲଟେଇ ପାଲଟେଇ ପଢ଼ି ବସିଲି; କିନ୍ତୁ କିଛି ଭଲ ଲାଗିଲା ନାହିଁ। ବର୍ଷାର ଟପ ଟପ ଶବ୍ଦ ସାଙ୍ଗରେ ମୋ କାନରେ ବାଜିଗଲା ସେହି କରୁଣ କଥା କେତୋଟି—'ବାବୁ ପେଟ ବିକଳରେ ଚାଲି ଆସିଛୁ, ସେରେଟିଏ ଚାଉଳ ପାଇଁ । ଏଥର କି ଛାଡ଼ିଦିଅ, ପିଲାଦିଓଟି ମୋର ମରିଯିବେ ଯେ ।' ଚାରି-ଆଡ଼କୁ ଚାହିଁଲି, କେହି କେଣେ ନାହିଁ । ଆରଘରେ ମୋର ପିଲା ଦିଓଟି ଖାଇପିଇ ସାରି ଆନନ୍ଦରେ କୋଳାହଳ କରୁଛନ୍ତି । ଗୃହିଣୀ ସାନ ପିଲାଟିକି ଧରି ଦୁଧ ପିଆଇ ପିଆଇ ଗୁଣୁ ଗୁଣୁ ସ୍ୱରରେ ଗୋଟାଏ ଗୀତ ଗାଉଛନ୍ତି । ସାମନା ରାସ୍ତାଟାରେ ବେଶି ଲୋକ-

ବାଭର ଚଳାଚଳ ନାହିଁ । ଖାଲି ମଝିରେ ମଝିରେ ଗୋଟାଏ ହୁଇସ୍‌ଲ । ଫିଟିଙ୍କା ହଟ ହଟ କରି ଗଡ଼ି ଚାଲନ୍ତି, ଓସାରିଆ ରାସ୍ତାଟାର ପିଚ୍‌ଦିଆ ଦେହ ଉପରେ । ଗୋଟାଏ ବାଉଳିଆ ବାୟା ରାସ୍ତାରେ ଲଙ୍ଗ ଲଙ୍ଗ ଯାଉଁ ଯାଉଁ ବଡ଼ ପାଟିକରି ଗାଇଗଲା—"କେତେ ଧନକୁ ମନ ବାନ୍ଧିଛୁ ଅନ୍ଧ, କି ଧନ ଯିବୁ ତୋର ଛୁଟିଲେ ଘଟ ରେ ।" ମୋତେ କିନ୍ତୁ ଭଲ ଲାଗିଲା ନାହିଁ । ହାରମୋନିୟମଟା ଛାଡ଼ି ଯାଇ ବସିଲି; କିନ୍ତୁ ଗୀତଗୁଡ଼ା ଖାଲି ବେସୁରା ହୋଇଗଲା । ହାରମୋନିୟମ ଛାଡ଼ି ଗ୍ରାମଫୋନ ଧରିଲି—ହେଲା ନାହିଁ । ମନଟା ଖାଲି ଧାଇଁ ଚାଲିଲା ସେଇ ଘଟଣାଟା ପାଖକୁ, ଯାହାକୁ ଭୁଲି ଯିବାପାଇଁ ମୁଁ କେତେ ଚେଷ୍ଟା କରୁଛି; କିନ୍ତୁ ପାରୁ ନାହିଁ ।

ସେଇ ଚମ ଧୁଡ଼ୁ ଧୁଡ଼ୁ, ହାଡ଼ ଗିଞ୍ଜ ଗିଞ୍ଜ ନରକଙ୍କାଳଟା ମୋର ଆଡ଼େ ଯେପରି ଅନାଇ କହୁଥିଲା, 'ବାବୁ, ଏଥରକ ମୋତେ ଛାଡ଼ିଦିଅ । ପେଟବିକଳରେ ଧାଇଁ ଆସିଛି ସେରଟିଏ ଚାଉଳ ପାଇଁ, ପିଲାଯୋଡ଼କ ମୋର ମରିଯିବେ ଯେ ।' ଆହା ! କି କରୁଣ ତାର ଚାହାଣୀ । ଯୁବତୀ ନିଶ୍ଚୟ, ତାର ହାଡ଼ୁଆ ଶୁଖିଲା ଦେହଟାରେ ତାରୁଣ୍ୟର ଅଳ୍ପ ସୁଙ୍ଖା ଫୁଟିଉଠୁଛି ଯେ । ପିନ୍ଧିଛି ଗଣ୍ଡେ ଛିଣ୍ଡା ମଇଳା କୋଉଛି କନା, ଶତଚେଷ୍ଟା ସତ୍ତ୍ୱେ ତାର ଯୌବନଟାକୁ ଢାଙ୍କି ନ ପାରି ସେ କନାଖଣ୍ଡିକ ଯେପରି ଏଣେତେଣେ ଉଡ଼ିବୁଲୁଛି । କେତେ ଦୂରରୁ ଆସିଛି କିଏ ଜାଣେ ? ପାସେଞ୍ଜର ଗାଡ଼ିର ଗୋଟିଏ ଡବାରେ ଏକ କୋଣରେ ବେଞ୍ଚ ତଳେ ପଡ଼ିରହିଥିଲା ତାର ସେଇ ହାଡ଼ୁଆ କଙ୍କାଳଟା, ଲୁଗାକାନିରେ ବନ୍ଧା ସେରଟିଏ ଚାଉଳ, ବିନା ଟିକଟରେ ଆସିଛି ସେ । ଟି. ଟି. ଅଇ. ଭାବରେ ମୋର କର୍ତ୍ତବ୍ୟ

ହେଉଛନ୍ତି ତାଙ୍କୁ ଧରି ଓହ୍ଲାଇଦେବା । ସେଥିପାଇଁ ମୁଁ ସେ ଡବା ଭିତରକୁ ଉଠିଗଲି । ଦେଖିଲି ତାଙ୍କର ରକ୍ତହୀନ ମୁହଁଟା ମୃତ୍ୟୁର ଭଳି ଶେତା ପଡ଼ିଗଲା । ଅଣ୍ଟା ଦେହଟା ତାଙ୍କର ଭୟରେ ଥର ଥର ହୋଇ କୁବ୍ଜ ହୋଇ ପଡ଼ିଲା । ଅକସ୍ମାତ୍ ଆତଙ୍କରେ ସେ ଯେପରି ସ୍ତବ୍ଧ ହୋଇଗଲା । ଅଜ ପାଞ୍ଚ ଜଣଙ୍କ ପରି ତାଙ୍କୁ ମଧ୍ୟ ଟିକେଟ ମାଗିଲି, କିନ୍ତୁ ସେ ଖାଲି କହିଲା, 'ବାବୁ, ଏଥରକ ଛାଡ଼ିଦିଅ । ପେଟ ବିକଳରେ ଧାଇଁ ଆସିଥିଲି ସେଇଟିଏ ଗୁହାଳ ପାଇଁ । ପିଲାଯୋଡ଼ିକ ମୋର ଭୋକରେ ଛଟପଟ ହେଉଥିବେ ।' ତାର ସେ କରୁଣ କାକୁତି ମିନତି ଶୁଣି ମୋର କର୍ତ୍ତବ୍ୟନିଷ୍ଠ ଟି. ଟି. ଆଇ.ର ହୃଦୟ ଟିକିଏ ହେଲେ ତରଳିଲା ନାହିଁ । ଭାବିଲି, ମୁଁ ତ ଗୁକିରୀ କରୁଛି—ମୋର କର୍ତ୍ତବ୍ୟ କରିବ, କର୍ତ୍ତବ୍ୟ କରିବ—କଠୋର କର୍ତ୍ତବ୍ୟ ! ଯେତେ ଅପ୍ରୀତିକର ହେଲେ ବି କର୍ତ୍ତବ୍ୟ ତ; ହୃଦୟ କହିଲା, ହାୟରେ ପାଷାଣ୍ଡ ପଶୁ । ଗୁକିରୀ କରୁଛୁ ତ ପେଟ ଗୁଖଣ୍ଡକ ପାଇଁ, ତା ବୋଲି କ'ଣ ତୋର ହୃଦୟ ନାହିଁ, ଦୟା ମାୟା ନାହିଁ ? କର୍ତ୍ତବ୍ୟ କଠୋର ସ୍ୱରରେ କହିଲା, ନା ନା, କର୍ତ୍ତବ୍ୟହିଁ ଏକମାତ୍ର ପନ୍ଥା । ମୁଁ କିଂକର୍ତ୍ତବ୍ୟବିମୂଢ଼ ହୋଇ ଠିଆ ହେଲି । ହୃଦୟ ଭିତରେ ଲାଗିଲା ମୋର ଏକ ତୁମୁଳ ଯୁଦ୍ଧ । କର୍ତ୍ତବ୍ୟ ନା ହୃଦୟ । ଭାବିଲି, ନା ଯାହାଁ ଯାଉ ତାହା ହେଉ, ଅଜ ଛାଡ଼ି-ଦେବି ଯାଙ୍କୁ; କିନ୍ତୁ ପଛକୁ ଗୁହିଁ ଦେଖିଲି ଗାର୍ଡ ସାଇବ ତାର ଅଲ୍ଡଓଟି ହ୍ୱିସେଲ ବଜେଇ ସେଇ ବାଟେ ଗୁଲିଗଲା ପ୍ଲାଟଫର୍ମ ଉପରେ ଯୋଦ୍ଧାଙ୍କମତ ସଚ କରି । ସେ ମୋତେ ଦେଖିଛନ୍ତି କି ନା ଜାଣେ ନାହିଁ, କିନ୍ତୁ ମୋର ମନରେ ଦୁର୍ବଳତା ପଶିଗଲା । ଜାଣେ ସାଇବ ଦେଖିଥିବ । ଯଦି ମୁଁ ଛାଡ଼ିଦିଏଁ, ତେବେ ମୋର ଗୁକିରୀ ଯିବ ଯେ । ତା ପରେ ମୋର ପିଲା ପିକା କିଏ କହିବେ ?

ଏ ଦୁର୍ବଳତାର ଧକ୍କାରେ ମୋର ହୃଦୟ ବଜ୍ରଠୁଁ ବଳି କଠିଣ ହୋଇଗଲା । ମୁଁ ତାର କାକୁତି ମିନତି ପ୍ରତି ଦୃକ୍‌ପାତ ନ କରି ତାକୁ ବାହାର ଯିବାକୁ କହିଲି । ସେତେବେଳକୁ ରାତି ପ୍ରାୟ ଦୁଇଟା ହେବ । ବାହାରେ ବର୍ଷା ପବନ ଛେଡୁଥାଏ । ଅମାବାସ୍ୟାର ଗାଢ଼ ଅନ୍ଧକାର, ମୁହଁକୁ ମୁହଁ ଦିଶୁ ନ ଥାଏ । ନିର୍ମମ ମୁଁ ଟିକିଏ ବୁଝି ଭାବିଲି ନାହିଁ, ଏତେବେଳେ ଏ ଦୁର୍ଯୋଗରେ ଯୁବତୀଟି ଯିବ କୁଆଡ଼େ ? ଯଦି ତାକୁ ଓହ୍ଲାଇଦିଏଁ ଏ ଅପନ୍ତରା ଭୂଇଁରେ, ତେବେ ତାର ପିଲାଯୋଡ଼ିକ କରିବେ କଅଣ ? କର୍ତ୍ତବ୍ୟ, କର୍ତ୍ତବ୍ୟ, କଠୋର କର୍ତ୍ତବ୍ୟ । ନା, ନା, ମୋର ନୀଚ ସ୍ୱାର୍ଥପରତା । ତାହାହିଁ ମୋତେ କର୍ତ୍ତବ୍ୟର ଛଳନାରେ କାପୁରୁଷୋଚିତ ଦୁର୍ବଳତା ଭିତରକୁ ଠେଲିଦେଲା । ମୁଁ ମାନବର ସ୍ତରରୁ ପଶୁସ୍ତରକୁ ଓହ୍ଲାଇଗଲି ।

ଗାଡ଼ି ଛିଡ଼ା ହେଲା, ଗୋଟିଏ ଗ୍ରେଟିଆ ଷ୍ଟେସନରେ । ଅନ୍ଧାରିଆ ପ୍ଲାଟଫରମଟି ଖୁବ୍ ନୀଚରେ ଥାଏ । ଭିତର ଭଳି ଆଲୁଅଟିଏ ତାହିଁ କେଉଁ କଣରେ ମିଞ୍ଜି ମିଞ୍ଜି ହୋଇ ଜଳୁଥାଏ । ମୁଁ କହିଲି ତାକୁ ଓହ୍ଲାଇ ଯିବାକୁ । ସେ ପୁଣି ଟିସରି କାତର କଣ୍ଠରେ କ୍ଷମା ମାଗିଲା । ତା ପରେ ମୋର ଗୋଡ଼ ଯୋଡ଼ାକୁ ଜାବୁଡ଼ି ଧରି କହିଲା, "ବାବୁ, ଏଥରକ ମୋତେ ଛାଡ଼ିଦିଅ, ନୋହିଲେ ପିଲାଯୋଡ଼ାକ ମୋର ମରିଯିବେ ଯେ ।"

ବାହାରେ ଶୁଭିଲା ଯୋତାର ମଚ ମଚ ଶବ୍ଦ । ଭାବିଲି, ସତେ କଣ ଗାର୍ଡ ସାହେବ ଆସିଲା କି ପୁଣି ? ସତେ କଣ ସେ

ମୋର କର୍ତ୍ତବ୍ୟର ଅବହେଳା ଦେଖୁଛନ୍ତି ? ଛାତିରେ ମୋର ଛୁରୀଏ ପଶିଗଲା । ମୁଁ ଗୋଡ଼ଟାକୁ ଜୋରରେ ଛାଟିଦେଲି, ଖୋଲି ଦିଭୁଙ୍ଗା ଦେଇ ସେ ବିଚାରୀ ଲୁଷ୍‌କିନା ଗଡ଼ିପଡ଼ିଲା ସେଇ ଅନ୍ଧାରିଆ ପ୍ଲାଟଫରମ ଉପରକୁ । ଗୋଟାଏ ଶାଳି ଅସ୍ପଷ୍ଟ ଆର୍ତ୍ତନାଦ —ମୋ ପିଲା । ଗାର୍ଡ଼ ସାହେବ ହୁଇସିଲ ମାରିଦେଲା, ଗାଡ଼ି ଛାଡ଼ିଦେଲା । ମୁଁ ବସିପଡ଼ିଲି ପାଖ ବେଞ୍ଚଟା ଉପରେ । ତା ପରେ କଣ ହେଲି କେଜାଣି । ମୋତେ ବୋଧହୁଏ ତନ୍ଦ୍ରା ଲାଗି ଯାଇଥିଲା ।

ତହିଁ ପରଦିନ ଫେରନ୍ତା ଗାଡ଼ିରେ ଫେରୁଥିଲି । ଶୁଣିଲି ଯେ, ଗୋଟାଏ ସାନ ଷ୍ଟେସନ ନିକଟରେ ଗୋଟାଏ ଭିକାରୁଣୀ ଯୁବତୀ ଚଳନ୍ତା ଗାଡ଼ିରୁ ଖସିପଡ଼ି ମରିଯାଇଛି । ତାର ଲୁଗା କାନିରେ ବନ୍ଧା ହୋଇଥିଲା ସେରେ ଚାଉଳ । କଥାଟା ଶୁଣିଲା କ୍ଷଣି ଛାତିଟା ମୋର ଦମ୍ ଦମ୍ ହୋଇଗଲା । ଦେହ ଗୋଟାଯାକ ଝାଳରେ ବୁଡ଼ିଗଲା । ଆଖିକି ଦିଶିଲା, ସେଇ ନରକଙ୍କାଳଟାର ପ୍ରେତମୂର୍ତ୍ତି, ଆଉ କାନକୁ ଶୁଭିଲା ସେଇ କରୁଣ କଥା କେତୋଟି —"ବାବୁ, ମୋତେ ଏଥର କ୍ଷମାଦିଅ । ପେଟବିକଳରେ ଧାଇଁ ଆସିଥିଲି ମୁଠିଏ ଚାଉଳ ପାଇଁ, ପିଲାଯୋଡ଼ିକ ମୋର ମରିଯିବେ ଯେ ।"

ଡ୍ୟୁଟି ସରିଲା । କର୍ତ୍ତବ୍ୟ ମୋର ଶେଷ ହେଲା । ବସାକୁ ଫେରିଲି । ଘରେ ନ ପଶୁଣୁ ଗୃହିଣୀ କହିଲେ, 'କି ହୋ, ତମ ଦେହ କଣ ଖରାପ ହୋଇଥିଲା କି ? ଏମିତି କାଳିଟା ଦିଶୁଛ କାହିଁକି ?' ମୁଁ କହିଲି, 'ନା କିଛି ନାହିଁ ।'

ତା ପରେ କେତେଥର ଉଜଟିରେ ସେଇ ଗାଡ଼ିରେ ଯିବା ଅସିବା କରଛି, କର୍ତ୍ତବ୍ୟର କଠୋର ନିର୍ମମ ଅଦେଶକୁ ଅକ୍ଷରେ ଅକ୍ଷରେ ପାଳିଯାଇଛି । ମୁଁ ଯେ ଟି. ଟି. ଅଇ. । ସେଇଟା ମୋର କର୍ତ୍ତବ୍ୟ । ମୁଁ ମନୁଷ୍ୟ ନୁହେଁ, ମୋର ହୃଦୟ ନାହିଁ । ମୁଁ ଖାଲି ପେଟ ଗୃହଣର ଗୃକର, ଭାତ ମୁଠାକର ନୌକର—ଟି.ଟି. ଅଇ. । ମୁଁ ଖାଲି ଟି. ଟି. ଅଇ.—ଟି. ଟି. ଅଇ. । ମୋର ହୃଦୟ ନାହିଁ । ମୋର ମାନବିକତା ନାହିଁ । ଅଛି ଖାଲି ମୋର କର୍ତ୍ତବ୍ୟ, କଠୋର କର୍ତ୍ତବ୍ୟ ।

ଶ୍ରୀ ଅନନ୍ତପ୍ରସାଦ ପଣ୍ଡା

# ହିସାବ ନିକାଶ

ମାଗୁଣି ଗୁରୁ ଜଣେ ନାମଜାଦା ଲୋକ । ଜମି ବାଡ଼ି ଢେର ତା'ଠିକୁ କମ୍ ନୁହେ । ବଳଦ ଦଶହଳ ନିଜ ଚାଷ କରନ୍ତି, ଏ ବାଦ୍ ଭାଗ ବର୍ଗ ଜମି ମଧ୍ୟ ଅଛି । ଘର ପରି ଘରଟାଏ । ବଧନାପୁର ନାଁ ଶୁଣିଲେ ଗୁରୁ ଘର କଥା ସମସ୍ତେ ପଚାରନ୍ତି । ସକାଳଠାରୁ ବେଳ ପହରେ ପର୍ଯ୍ୟନ୍ତ ମୂଲିଆ ଖମାରିଆମାନଙ୍କ ତର୍ଜନ ଗର୍ଜନ—ଏଠିକି ହଳ ଯାଉ, ସେଠା ବିଲ ବାଦା ଦିଆଯିବ, ସବଣା ଚଷକୁ ଜୋଡ଼ମାଟିଆ ଦେବାକୁ ଦୁଇଟା ଯାଉନ୍ତୁ—ଘୋରଡ଼ା ଜମି ଭଙ୍ଗ ହେବ, ତିନିଟା ସେଠାକୁ ଯିବେ—ମଇ ଦେବାକୁ କଇଁଫୁଲିଆ ବଡ଼ ବଳଦ ହଳକ ନେଇଯା—ଇତ୍ୟାଦି ଲାଗିଥାଏ ।

ଏ ଚାଷ ବରାଦ ଅଧ୍ୟାୟଙ୍କ ଶେଷ ହେଲେ ଗୁରୁ ଅଣ୍ଟି ମଳି ମଳି ଦାଣ୍ଡ ପାଣ୍ଡିଗକୁ ଉଠି ଗୁଦଣା ଉପରେ ବସନ୍ତି । ଗଜୁଡ଼ ଦାନ୍ତକାଠି ପାଣି ଦିଏ । ଦୁଇ ଘଣ୍ଟା ଲାଗେ ଦାନ୍ତଘଷା । ଗ୍ରାମର ରାମା, ଶାମା, ମାଧିଆ, ଅନନ୍ତା, ଗୁରୁବାରିଆ ଆସି ଜୁଟନ୍ତି । ଗାଁ ରାଜନୀତି ସବୁ ପଡ଼େ—ଗ୍ରାମ ପଧାନ ଗୋଟିଏ କଳଙ୍ଗା ବାଛୁରି ଆଣିଛୁ, ନାହିଁ ନଥିଲା ବଳଦଟାଏ ହେବ, ଥୋଇ ଦେଇ ଦେଇ କୁଣ୍ଡେ ଖାଲ କରି ଦେଇଛୁ । ହୁଣ୍ଡିଦାର ବଡ଼ମା ଡୋକେଇଲାଣି; ହେଲେ

କଣ ହେବ, ଏଡ଼ା ଧର୍ମବନ୍ତ ବୁଢ଼ୀଟିଏ ! ବନ୍ଧରେ ମାଛମରା ଆରମ୍ଭ ହେଲଣି—ଖାଲି ବାଲିଆକଣା ଗୁଡ଼ାଏ ପଡ଼ୁଛନ୍ତି । କାଲି ସାତଭାଇଆ ମାଙ୍କଡ଼ଗୁଡ଼ାଏ ଆସି ହରି ବେହେରା ବରୁଆର ଗଛପଟ ଗୁଡ଼ିକ ସବୁଖାଇ କରି ଖାଇଗଲେ । ନିତା ବଣ୍ଟାଳିଆ ଏଡ଼େ ମୂର୍ଖ, ମାଆକୁ ଗୋଇଠା ମାରିଲା—ଇତ୍ୟାଦି । ଇତି ମଧ୍ୟରେ ପାନଡାଲା, ଗୁଣ୍ଡିଭୁମା, ଝଁରଲଗା ପିମ୍ପଳି ଧରି ବୁଢ଼ୀଦାର ବାଡ଼ବାଟୁଆ ପହଞ୍ଚିଯାଏ । ଶାଗୁଣା ମଡ଼ାକୁ ବେଢ଼ିଲା ପରି ଚଉଦିଗ ଘେରି ବସିଯାନ୍ତି—କିଏ ଚୂନ ସହିତ ପାନ ମଳି ବସେ; କିଏ ପାନ ଖିଲ ଶିର ଭାଙ୍ଗି ଶୁଙ୍ଘି ପିଙ୍ଗିଦିଏ, କିଏ ଚୂନ ଲଗାଏ—କିଏ ଗୁଆ ଭାଙ୍ଗି ଦେଉଥାଏ ।

ବୁଢ଼ୀଙ୍କ ଦାନ୍ତଗଣା ଶେଷବେଳକୁ ପାନ ତିଆରି । ବସିଥିବା ଲୋକେ ଖଣ୍ଡେ ଦିଖଣ୍ଡ ଲେଖାଏଁ ପାଆନ୍ତି । ମାଗୁଣି ସାହୁଆଣୀ ହୋଇ ବସି, ମୁହଁ ପୋଛି ଦେଇ ତାମ୍ବୁଳର ସ୍ୱର୍ଗୀୟ ରସ ଆସ୍ୱାଦନରେ ଲାଗିଯାନ୍ତି । ଏତେବେଳକୁ ଯାଇ ବୁଢ଼ୀଙ୍କ ପ୍ରଶଂସା ଜମିଲା ଉଠେ । ତାଙ୍କ ପୁଅ ଅଇଠା ପରି ଗୁଣବାନ୍ ରୂପବାନ୍ ପୁଅ କାହାର ଅଛି । ତାଙ୍କ ଯୋଗୁଁ ତ ଗ୍ରାମ, ତାଙ୍କ ଯୋଗୁଁ ତ ଘର । ବୋହୂଟି ବି ସେହିପରି । ରୂପ ଦେଖିବାକୁ ଲକ୍ଷ୍ମୀଟିଏ । ଏଡ଼େ ଗୁଣର ଯେ, ମାଛକୁ ମ ବୋଲେ ନାହିଁ । ଶାଶୁ ଶଶୁରଙ୍କ ଗୋଡ଼ ଧୋଇ ପାଣି ନ ପାଇଲେ ଜଳ ଛୁଇଁବ ନାହିଁ । ବଳଦଙ୍କ ଗୁଣ ବି ସେହିପରି । ଲଙ୍ଗୁଳରେ ହାତ ଛୁଆଁଇ ଦେବେ ନାହିଁ—ଯିମିତ ଧର୍ମକୁ ସିମିତ କର୍ମ ମିଳୁଛି । ଏ କଣ ସହଜ ଭାଗ୍ୟର କଥା । ବୁଢ଼ୀ ହସି ହସି ସବୁ କଥା ଉପଭୋଗ କରୁଥାନ୍ତି । ପାନ ସରିଗଲେ ଭାଇ ସଜାନ୍ତି—

"ଅରେ ହରିଆ, ଗୁଣ୍ଡି ଅଣ, ପାନ ଅଣ, ଗୁଆ ସରିଗଲା, ପା—
ଦୋକାନରୁ ନେଇ ଆ ।"

ବେଳ ସାଢ଼େ ଘଡ଼ି ଦିପହର ବେଳକୁ ମର୍ଦ୍ଦନଟା ହୋଇ ଗୁରୁ ଗାଧୋଇ ଯାନ୍ତି । ସ୍ନାନ ସାରି ଖାଇ ପିଇ ଆସନ୍ତି । ବେଳ ଦୁଇଘଡ଼ି ଥାଉଁ ନିଦ ଭାଙ୍ଗେ । ମୁହଁ ଧୋଇ, ଗାମୁଛା ପାଲଟି, ଯୁଳାଏ ବଢ଼ିଆ ଚୂନପତ୍ର ମଳି, ପେଟ ଚାଡ଼େଇ ପୋଖରୀପାଣି ବାହାରନ୍ତି । ଆସୁ ଆସୁ ସନ୍ଧ୍ୟା । ଟିକିଏ ଅଫିମ କଉଁଟରୁ କାଢ଼ି ସେବନ କରି, ତା ପରେ ଗୋଟାଏ ଦୁଇଟା ଲୁଣ ଭୋଗ୍, ଦଶ ଦୁଧ, ପାଚିଲା କଦଳୀ ଦୁଇଟା କି ପୁଞ୍ଜାଏ, ଛେନା ଖଣ୍ଡେ, ଖଇ ଯୋଷେ ଚକଟି ବାଟୁଲା ବଳି ପକାଇ ଦଅନ୍ତି । ତା ପରେ ଚକାମାଳଟିଏ ପକାଇ ଦାଣ୍ଡ ଗୁନ୍ଦନୀ ଉପରେ ବୈଠକ । ଏତେବେଳର ଗହଣଟା ବଡ଼ ଜମି ଉଠେ । ବିଲ ବାଡ଼ି କାମଦାମ ସାରି ଗାଁଟାର ବାବୁପଣ ଲୋକେ ଗୁରୁଙ୍କ ଦୁଆରେ ଜମା । ହୋ ହା ଗୋଳମାଳରେ ଅନେକ ରାତି ହୋଇଯାଏ । ପୁଣି ସେହିପରି ଗ୍ରାମର ଗପ, ବିଲ ବାଡ଼ି ଚର୍ଚ୍ଚା, ଗ୍ରାମବାସୀଙ୍କ ଉପରେ ସମାଲୋଚନା ଓ ଗୁରୁଘରର ପ୍ରଶଂସା ପଡ଼େ । ରାତିଅଧ ସରିକି ମାଗୁଣି ଗଣ୍ଡାଏ ଖାଇ ଦେଇ ପଡ଼ିଯାନ୍ତି । ସହଜରେ ନିଦ ଆସେ ନାହିଁ । ଅଫିମ ନିଶାରେ ରାତି ତମାମ୍ କେତେ ସୁଖସ୍ୱପ୍ନ ଦେଖନ୍ତି । ପାହାନ୍ତିଆକୁ ମାଇ କାକର ପଡ଼ିଲେ ଯାଇ ଟୋପେଲେଇ ପଡ଼ନ୍ତି ।

ମାଗୁଣି ଗୁରୁ ବଣକାପୁରର ବୃଦ୍ଧ ଗୃହୀ, ବଡ଼ ଘର । ସନ୍ତାନ ମଧ୍ୟରେ ଅଣ୍ଟିରା ବୋଲି ପୁଅ, ମାଳତୀ, ସେବତୀ, ଚମ୍ପା ବୋଲି ତିନୋଟି ଝିଅ । ପୁଅଟି ଅପରୂପ ଅଣ୍ଡିରି, ଉପରୁ ଦଉଡ଼ି

ମୃଅ ହୋଇ ଗୃଲ ଯାଇଅଛନ୍ତି । ଯନ୍ମ ଅଗଠା ଭଳ୍ର ଛାଞ୍ଚ ପାଇ ଥିବାରୁ ନାମ ଅଗଠା । ମୃଅଟି ଭେଣ୍ଡା; ବୟସ-୨୦।୨୨ ହେବ—ଦୁଇ ବର୍ଷ ହେଲା ବିବାହ ହୋଇଅଛି ।

ଗୁରୁ ବଡ଼ ଅମାୟିକ, ବେପରବାଏ ଲୋକ—ଖୁବ ଦାନଶୀଳ—ଯେ ଯାହା ମାଗିଲେ ଫଳେ ପୃଷ୍ଠେ ପାଇଥାନ୍ତି । ଦୁଇ ପଦ ତୋଷାମୋଦ କଥା ଶୁଣିଲେ ପଇସାକ ଜାଗାରେ ପାଞ୍ଚ ପଇସା ଖର୍ଚ୍ଚ କରି ପକାନ୍ତି । ଛନ୍ଦ କପଟ ମାଲି ମକଦ୍ଦମା ନାଁ ଶୁଣିଲେ ନିଦ ହୁଏ ନାହିଁ—ଖୁବ ଭୟ । ଆୟ ଅନୁସାରେ ଖର୍ଚ୍ଚ ନାହିଁ—ହେଜ ହେଜ ଯେତେ ହୋଇଯାଏ । ସେଥିର ଫଳରେ ବର୍ତ୍ତିମାନ ବର୍ଷକ ଅୟ ଅଣ୍ଟେ ନାହିଁ—ଜମା ଧାନରୁ ଵିକି ହୋଇ ଖର୍ଚ୍ଚ ହୁଏ ।

ଅଗଠାର ପ୍ରକୃତ ଅଲଗା । ଗ୍ରାମର ଭଲ ମନ୍ଦ ମାଲି ମକଦ୍ଦମାରେ ତାର ହାତ । ମୃଲିଆଙ୍କୁ ପିବା ଆସିବା କରି ମାମଲତକାର ହୋଇ ଜୁଟିଲାଣି । ଗ୍ରାମ ମଧ୍ୟରେ ତାର ଖାତିର ଖୁବ୍ ବେଶି । ତାହା ମଧ୍ୟରେ ମାଲି ମକଦ୍ଦମା ଜୁଟିଲେ ସେ ମାମଲତକାର ହୋଇ ନିଷ୍ପତ୍ତି କରିଦିଏ । ନିଜେ ତାହାର ପାରୁ ଭୁଲକମେ ପଇସାଟିଏ ଠକି ନିଏ ନାହିଁ । ଖର୍ଚ୍ଚ ସମ୍ବନ୍ଧରେ ବାପଠାରୁ ଚତୁର୍ଗୁଣ, ତାର ଯାତ୍ରା, ଲୀଳା ଓ ସଙ୍ଗୀତ ଅଖଡ଼ା ମେଳ, ପିଲାଙ୍କ ବେଶଭୂଷା ଓ ଅଲଙ୍କାରପତ୍ରରେ ଅନେକ ପଇସା ଲାଗେ । ପାନ ଗୁଅ ଖର୍ଚ୍ଚ ମଧ୍ୟ ଅପ୍ରମାର । ଗାଁକୁ କୌଣସି ଭଲ ଜିନିଷ ବିକା ଆସିଲେ ଅଧିକ ଦୁଇ ପଇସା ଦେଇ ଖରିଦ କରେ । କୌଣସି ମେଳଣ, ଯାତ ତୀର୍ଥ ତାର ବାଦ୍ ପଡ଼େ ନାହିଁ ।

ମାଗୁଣିଙ୍କ ଘର ପଡ଼ଶା ଖଣ୍ଡେ ଦୂର ଛଡ଼ା ଗୋବର୍ଦ୍ଧନ ସାହୁ ମହାଜନ ଘର । ଖାସ୍ ମହାଜନ—ପଚାଶ ହଜାର ଟଙ୍କା ମହାଜନୀ ଲାଗିଛି; ଲୋକେ କହନ୍ତି—ଏ ବାଦେ ଗଦା ଗଦା ହୋଇ ସୁନା ରୂପା ଘରେ ପୋତା । ହେଲେ କଣ ହେଲା, ଗୃହବାସ ଅତି ଅଳ୍ପ—ଚାକର ଯୋଡ଼ିଏଙ୍କରୁ ବେଶି ନାହାନ୍ତି, ବଳଦ ଦୁଇହଳ, ମହାଜନର ଦୁଇ ପୁଅ ବିଲବାଡ଼ିରେ ଖଟି ଦବା ଲାଗି କାମ କରନ୍ତି । ବିଲରୁ ଆସି ଗାଈ ବଳଦ ମୁହାଁନ୍ତି । ବୁଢ଼ାଟା ଟଙ୍କା ପଇସା କାରବାର ବୁଝେ । ପୁଅମାନେ କାମଦାମରେ ହେଳା କଲେ, ଅଭିଧାନଛଡ଼ା ଭାଷାରେ ଗାଳି ଦିଏ; ଭେଣ୍ଡା ପୁଅଗୁଡ଼ାଙ୍କୁ ହାତ ପୂରାଇ ମାରେ ! ବୋହୂମାନଙ୍କ ଦଶା ମଧ୍ୟ ତଥୈବଚ । ବାସି ପାଇଟିଠାରୁ ଆରମ୍ଭ କରି ଘରଲିପା, ଧାନକୁଟା ପର୍ଯ୍ୟନ୍ତ ସବୁ ସେମାନଙ୍କୁ କରିବାକୁ ପଡ଼େ ।

ସାହୁଙ୍କଠାରେ ସୁଧର ହାର ଭାରି ଚଢ଼ା, ଅଣ୍ଟା ସୁଦ୍ଧା କରଜ ନେଇ କେହି ସମ୍ପୂର୍ଣ୍ଣ ଶୁଝି ପାରେ ନାହିଁ । ସୁଧ ଉପରେ ସୁଧ, ଅସୁଲ ଦେଲେ ବାକି, ମିଆଦ ପୂରିଗଲେ ସାନ୍ନା ତମସୁକ ଚାଲିବ—ନିତ୍ୟକର କଥା । ବୁଢ଼ା ନିର୍ମାଲ୍ୟ ଜୋଥଲି ଆଗରେ ରଖି, ଝୁଲି ମୁଣିରେ ହାତ ପୂରାଇ ଆଖି ବୁଜି ସବୁବେଳେ ପାକୁଆ ପାଟି ପାକୁ ପାକୁ କରୁଥାଏ । ଖାତକ ଅସୁଲ ଦେଲେ ତମସୁକରେ ଅସୁଲ ଲେଖା ହୁଏ ନାହିଁ—ପରେ ମଜୁରା କରିବାକୁ ଆସିଲେ ସାଫ୍ ନିର୍ମାଲ୍ୟ ଜୋଥଲୀ ଝୁଲିମୁଣି ଧରି ଗୋଟିଏ କାଣିକଉଡ଼ି ଅସୁଲ ପାଇନାହିଁ ବୋଲି ଶପଥ କରିପକାଏ ! ଭଲ ଲୋକମାନେ ଏଣିକି ଖାତକଙ୍କୁ ଡାକିଲ କରି ପକାନ୍ତି । ଏଡ଼େ ବଡ଼ ବୁଢ଼ା, ଧର୍ମବନ୍ତ, ସର୍ବାଙ୍ଗ ତିଳକକଣ୍ଠ, ବୁଢ଼ାଟା କଣ ନିର୍ମାଲ୍ୟ ଧରି ମିଛ କହନ୍ତା !

କୁଣିଆ ଘରକୁ ବାହାରିଲେ ମାଗୁଣିଙ୍କ ସଙ୍ଗେ ଦୁଇଟା ଗୁଜର, ପ୍ରତିଦାନ ବ୍ୟବସ୍ଥାର୍ଥ ଯାବନ୍ତ ଲୁଗା ଗାମୁଛା ପୁଞ୍ଜାପେଣ୍ଡ ଚାଳ ପିତ୍ତଳ ସଙ୍ଗରେ ଯାଏ । ଦଶ ସର୍ଚ୍ଚ ଚୂଡ଼ା, ଖଇ, ନବାତ, ପାଚିଲା କଦଳୀ ମଧ୍ୟ ଯାଇଥାଏ ।

ମାଗୁଣି ଥରେ ବୋହୂ ଅଣିବାକୁ ବାହାରିଲେ । ସଙ୍ଗରେ ଦୁଇ ଜଣ ଗୁଜର । ଯାଇ ଯାଇ ସେ ଗାଁମୁଣ୍ଡ ନଈକୂଳ ପୋଲିଙ୍ଗ ଛୋଟାରେ ବସି ପଡ଼ିଲେ । ଭଣ୍ଡାରୀ ସତରଞ୍ଜି ପାରିଦେଲା; ବଟୁଆ ଫିଟାଇ ପାନ ଭାଙ୍ଗି ବସିଲା । ବେଳ ରତରତ, ବକ୍ର କିରଣ ଚଞ୍ଚଳ ନଦୀଗର୍ଭରୁ ପଡ଼ିଆକୁ ଏବଂ ଗଛ ଉପରକୁ ଉଠିଯାଉଅଛି । ବାଲିଶଯ୍ୟା ଉପରେ ସ୍ୱଚ୍ଛ ନୀରବେଣୀ ବଙ୍କା ବଙ୍କା ଗତିରେ କଳ କଳ ଶବ୍ଦ କରି ଚାଲି ଯାଉଥାଏ । ସ୍ଥାନ ଦେଖି ମାଗୁଣି ମୁଗ୍ଧ—ଭଣ୍ଡାରୀକୁ କହିଲେ, "ପାନଭଙ୍ଗା ଥାଉ, ଅଳ୍ପ ସର୍ଚ୍ଚୁଚୂଡ଼ା ପିତ୍ତଳରେ ଧୋଇ ଅଣ, କଦଳୀ, ନବାତ, ଖଇଟୁ ଦେଇ ଖାଇବା । ସମଧିଘର ଖାଇବାକୁ ଦେବାରେ ଉଚ୍ଛୁର କରିପାରେ, ଭୋକ ସମ୍ଭାଳିବ କିଏ ?

ଭଣ୍ଡାରୀ ହୁକୁମ ତାମିଲ କଲା । ଦରଖିଆ ହୋଇ, ପାଟିଏ ଚୂଡ଼ାଚକଟା ପାକୁଆ ପାଟିରେ ପାକୁଳି ଧରିଅଛନ୍ତି—ଦାନ୍ତ ଅଭାବରୁ ଚୂଡ଼ାଗୁଡ଼ାକ ସହଜରେ କଣ୍ଠନାଳୀ ଦେଇ ପ୍ରବେଶ କରିବାର ଉପଯୁକ୍ତ ହୋଇ ପାରୁ ନାହିଁ । ହଠାତ୍ ଅଗରେ ଦେଖନ୍ତି ସାନ ସମ୍ମୁଧି ନିତ୍ୟାନନ୍ଦ । ଯାଅନ୍ତି କାହିଁ, ହଠାତ୍ ଚୋବିଲା ବେଳକୁ ଚୂଡ଼ାଗୁଡ଼ାକ ତୋଟିରେ ଲାଗି ଯାଉଅଛି—କାଢ଼ି ଫକାଇବାର ମଧ୍ୟ ଉପାୟ ନାହିଁ । ଫୁଲକା ଗାଲ ଦୁଇଟା ଅପଥା ଫୁଲି ଯାଇ

ମୁଖମଣ୍ଡଳକୁ ନିତାନ୍ତ ବିକୃତ, ତଥା ବାକ୍ଶକ୍ତିକୁ ବଡ଼ ନିର୍ଦ୍ଦୟ ଭାବରେ ବନ୍ଦ କରି ଦେଇଅଛି । ଏ ସଙ୍କଟରୁ ପରିତ୍ରାଣର ଉପାୟ ଦେଖିଲେ ନାହିଁ ।

ସମ୍ମୁଖ ଆଗକୁ ଆସି ଓଳଗି ହେଲେ । ମାଗୁଣି ଓଠ ଦୁଇଟା ଟିକିଏ ମେଲା କରି ଅତି ଅସ୍ପଷ୍ଟ ଭାବରେ ଏଣୁତେଣୁ କଣ ପଦେ କହି ପକାଇ ହାତ ଦିଓଟି ଟେକିଦେଲେ । ନାଳ ସହିତ ମେଞ୍ଚାଏ ଚୂଡ଼ା ପାଟିରୁ ଗଡ଼ିପଡ଼ିଲା । ନିତ୍ୟାନନ୍ଦ ଓ ଗୁରୁବର ଦୁଇଟା ହସି ଉଠିଲେ । ଗୁରୁଙ୍କ କଣ୍ଠରେ ପାଟିରେ ଚୂଡ଼ାଗୁଡ଼ାକ ଲାଗି ବଡ଼ କଷ୍ଟ ଦେଉଥାଏ । କେତେଥର କାଶ ଆସିଲାଣି । ବଡ଼ କଷ୍ଟରେ ବନ୍ଦ କରିଅଛନ୍ତି । ହସ ଦେଖି କାଶ ଉଠି ଆସିଲା । ଏକାବେଳକେ ପାଟିରୁ ଚୂଡ଼ାଗୁଡ଼ାକ ଶତଧାବିକ୍ଷିପ୍ତ ହୋଇଗଲା ।

ମୁହଁ ହାତ ଧୋଇ ସାଷ୍ଟମ ହେଲେ । ପୁଣି ଥରେ ଭାରି ହସର ରୋଳ ଉଠିଲା । ମାଗୁଣି ମଧ ଏଥର ହସରେ ଯୋଗ ଦେଇ କହିଲେ—"କଣ କରିବ ସମ୍ମୁଖ, ଦୋଷ ଧରିବ ନାହିଁ । ସ୍ୱଭାବକଳିଆ ଲୋକ, କାଳେ ତୁମ ଘରେ ଖାଇବା ଉଚ୍ଛୁର ହେବ, ସେଥିପାଇଁ ଗଣ୍ଡାଏ ଖାଇ ଦେଇଥିଲି ।"

ତୁଳ ସମ୍ମୁଖ କେତେ ଖୁମ୍ପିବାସି ଗପସପ ହୋଇ ହାତ ଧୁଆଧୋଇ ହୋଇ ଯାଇ ଘରେ । ସମ୍ମୁଖ ଆସିଛନ୍ତି ବୋଲି ଭାରି ଗୋଟାଏ ଚହଳ ପଡ଼ିଗଲା, ଦେଢ଼ଜଣ ଆଉ ମାଉ ଭୁଲିଲେ— ମାଛକୁଳ ଅଣ୍ଡାଙ୍କ ମଣିଲେ । ଗଜେନ୍ଦ୍ର ବାଘୁଡ଼ା ଗାଳି ମାରିବାକୁ ଆଜି ବାପଗ୍ରାଣ୍ଡ ମନେ ପଡ଼ିଗଲା । ଗୁଡ଼ଅଧରୁ ଯଥାଶକ୍ତି

କଲଖିଆ ଅଣାଯାଇ କୁଅ, ଛେନା, ସର, ପାଚିଲା କଦଳୀ ସହିତ ସମୁଧିଙ୍କ ଚର୍ଚ୍ଚା ହେଲା । ଭାଜାଭଜା, ଭଜା, ସନ୍ତୁଳା, ମାଛତରକାରୀ, ଅମ୍ବିଳ, ଖେଚଡ଼ି, ପାଚିଲା ଆଦି ଅନେକ ପ୍ରକାର ଜନପଦର ସ୍ୱାଦ ତା' ପୀଢ଼ା ହେଲା ।

ଏତେ ଆଦର ଅଭ୍ୟର୍ଥନା ମଧ୍ୟରେ ଅସଲ କଥା କହିବାକୁ ଗୁରୁ ସମସ୍ତ ପାଇଁ ପାଉ ନାହାନ୍ତି । ଖାଇ ସାରି ହାତ ମୁହଁ ଧୋଇବା ବେଳେ ହଠାତ୍ କହି ପକାଇଲେ—"କଣ ହେବ କି, କାଲି ସକାଳୁ ବୋହୂ ପଠାଇବାକୁ ହେବ, ନ ହେଲେ ନୁହେଁ । ଆଉଁଠାବୋଝ ଦୁଇ ଦିନ ହେଲା ବେମାର । ବୋହୂ ଆସିବା ଦିନୁ ଘର ଘରପଣ ଦିଶୁନାହିଁ—ଖାଇବା ପିଇବାରେ ନିତାନ୍ତ ଅସୁବିଧା ।"

ସମୁଧିମାନେ ଏ କଥା ଶୁଣି ରାଗିଗଲେ—ଏକଣ ଏ, ଝିଅ ଆସିବାର କମା ପନ୍ଦରଟା ଦିନ ହୋଇ ନାହିଁ—ଫେର୍ ଏପରି କଥା, ନା ନା, ତାହା ହେବ ନାହିଁ । ଆଗିଆ ପୂର୍ଣ୍ଣିମା ଦ୍ୱିତୀୟାକୁ ଯାଇ ସୁଅସା ଗଜଡ଼ ଦେଇ ପଠାଇ ଦେବୁଁ ।

ମାଗୁଣି ଧରି କହିଲେଣି—ନାହିଁ, ନାହିଁ, ତା ହୋଇଥିଲେ ତ ମୁଁ ଏଠି ଜଳ ଗ୍ରହଣ କରି ନ ଥାନ୍ତି । ଯିମିତ ହଉ, ମୁଁ କାଲି ବୋହୂ ନେଇ ଯିବି ।

କବାଟ କଣ ଅଡ଼ୁଆଳରୁ ବୁଢ଼ୀ ସମୁଧୁଣୀ କହି ପକାଇଲେ —"ଶଲା ମୋର, ସମୁହ ଝୋଲା ମୁଣ୍ଡରେ ଜକ ଜୋଇ ଅସିଛନ୍ତି ପରା । ଏତେ ଉଡ଼ାପୋଡ଼ା କାହିଁକି ଏ ? ଦୁଇବର୍ଷ ପରେ ଝିଅ ଅସିଛି, ମାସ ଦୁଇଟା ନ ରଖି ଛାଡ଼ ଦେବା ?

ଏ କଥା ଶୁଣି ଗୁରୁଙ୍କ ମୁଣ୍ଡ ଗରମ ହୋଇଗଲା । ଉଠେଇ ଘରେ ଅନେକ ସମୟ ପଡ଼ି ରହିଲେ । ନିଦ ଆସିଲା ନାହିଁ । ରାତି ଦୁଇ ଘଡ଼ି ଥାଉଁ ତାହାଙ୍କୁ କିଛି ନ କହି ଚାକରମାନଙ୍କୁ ସଙ୍ଗରେ ନେଇ ବାହାରି ଗଲେ । ବେଳ ପହରେ ସହଜ ଯାଇ ଗ୍ରାମରେ ହାଜର । ଘରକୁ ନ ଯାଇ ଆଗେ ଗୋବର୍ଦ୍ଧନ ସାହୁ ମହାଜନ ଦୁଆରେ ପହଞ୍ଚିଲେ । ମହାଜନ ପଚାରିଲା—"କଥା କଣ, ଆପଣ ଏପରି କାହିଁକି ଅସି ଅଣ୍ଟା ହେଲେ ?

ମାଲୁଣି କହିଲେ—"ସେ କଥା କଣ କହିବି, ମହାଜନ ! ବର୍ତ୍ତମାନ ମୋ ଇଜ୍ଜତ୍ ତମ ହାତରେ । ମୁଁ ଅଳ୍ପଦିନ ଭିତରେ ସବୁ ହିସାବ ନିକାଶ କରିଦେବି ଯେ । ମତେ ବର୍ତ୍ତମାନ ଟଙ୍କା ତିନିଶ କରଜ ଦେବାକୁ ହେବ ।"

ଗୋବର୍ଦ୍ଧନ—"ହଜ, ହଜ, ଟଙ୍କା ତ ଆପଣଙ୍କର । ମତେ ପୁଣି ଏତେ ପଚରା କାହିଁକି ? ତେବେ ପୂର୍ବ ହିସାବଟା ମିଶାଇ ଖଣ୍ଡେ ତମସୁକ ଲେଖାପଢ଼ି କରାଇ ଦିଅନ୍ତୁ । ବୁଝିବା ହେଲେ ଅଣ୍ଟା, ଚରାଚର ସଂସାର; କେତେବେଳେ କାହା କପାଳରେ କଣ ଅଛି, କିଏ ଜାଣେ ? ଗୋଟାଏ ଲେଖାପଢ଼ି କରି ରଖିବା ଭଲ ।"

ସେହି ଦିନ ପିଠାମ କଣା ହୋଇ ଅସି ଯଥାବିଧି ଲେଖାପଢ଼ା ହୋଇଗଲା । ସୁଧ ପଡ଼ିଲା ଟଙ୍କାକେ ବର୍ଷକୁ ଛଅ ଅଣା । ଗୋବର୍ଦ୍ଧନ କହିଲା, "ହଜ, ହଜ, ଯାହା ଇଚ୍ଛା ଲେଖା ହୋଇଥାଉ । ଦେବା ନେବା ବେଳେ କଣ ସେ ସବୁ ରହିଯିବ ।"

ଗୁରୁ କହିଲେ—"ସେ ବିଷୟରେ ମୋର କିଛି କଳ୍ପନା ନାହିଁ, ମହାଜନ । ମୁଁ ତ ହିସାବ ନିକାଶ କରିଦେବି—ଯାହା ଇଚ୍ଛା ସୁଧ ଲେଖିଥାଅ ।"

ଟଙ୍କା ଧରି ସେଥିପରି ଦୁଇ ଜଣ ଗୃହର ସଙ୍ଗରେ ଯେଣ ମାଗୁଣି ଅରି ଧନ ସବାଳୁ ମୁହଁ ଅଧିଆ କଟକ ଯାତା କରିଗଲେ । ସମସ୍ତେ ଭାବା ହୋଇ ଭାବିଲେ—କଥା କଣ, ବୋଧହୁଏ ଆଣିବାକୁ ଯାଇ ଏକ କାଣ୍ଡ ।

କଟକରେ ବଡ଼ ସୌଦାଗରମାନେ କେତେ ପ୍ରକାର ଘୋଡ଼ା ବିକି କରିବାକୁ ଅଣି ରଙ୍ଗାବଗିଗୃରେ ପଡ଼ିଥାନ୍ତି; କେହି ଘୋଡ଼ା ଦେଖିବାକୁ ଗଲେ ପଗ୍ଭରନ୍ତି—ନିଜେ ରୋଜଗାର କରି ଘର କରିଅଛନ୍ତି, ନା ପୈତ୍ରିକ ସମ୍ପତ୍ତିରୁ ଧନୀ । ଅପେ ରୋଜଗାର କରି ଧନୀ ହୋଇଥିବା କଥା ଶୁଣିଲେ ସେମାନେ ପ୍ରଥମେ ଦଲଖାଇ ଅତି କମ ଦାମ ଘୋଡ଼ା ଦେଖାନ୍ତି । ସେପରି ଲୋକ ଘୋଡ଼ା କିଣି ପାରିବେ ନାହିଁ ବୋଲି ସେମାନଙ୍କର ଧାରଣା ।

ସ୍ନାନ ପ୍ରକାର ସାରି, ଦ୍ୱାଦଶ ତିଳକ କାଟି, ପାଟଲ୍ଲା ଗାମୁଛା ଖଣ୍ଡେ କାନ୍ଧରେ ପକାଇ, ମୁକ୍ତସାବାଦୀ ମଠା ପିନ୍ଧି ଗୁରୁ ଗୃହରମାନଙ୍କୁ ନେଇ ଘୋଡ଼ା ପସନ୍ଦ କରିବାକୁ ବାହାରିଅଛନ୍ତି । ତାଙ୍କ ହାଲ-ଗୁଲ ଦେଖି ସୌଦାଗରମାନଙ୍କ ମଧ୍ୟରେ ବିବାଦ ଗୁଲିଲା । ପ୍ରତ୍ୟେକ ତାଙ୍କୁ ନିଜ ଘୋଡ଼ା ଦେଖାଇବାକୁ ବ୍ୟଗ୍ର । ଶେଷରେ ଗୋଟିଏ ବାଦାମୀ ଜାତ ଘୋଡ଼ା ପସନ୍ଦ କରି ୨୫୦ ଟଙ୍କା ମୂଲ୍ୟରେ କିଣିଲେ । ଜିନ ପ୍ରଭୃତି କିଣିବାରେ ପ୍ରାୟ ଅଉରି ୬୦ । ୭୦ । ଟଙ୍କା ଲାଗିଗଲା ।

ଘଣ୍ଟି ଘାଗୁଡ଼ି ଜିନ ପ୍ରଭୃତି ଲଗାଇ ଘୋଡ଼ାକୁ ସଜ କରି ଗୁରୁ ଯଥାସମୟରେ ଗ୍ରାମରେ ହାଜର ହେଲେ । ଗାଁଟା ଯାକ ଲୋକ ଜମା ହୋଇ ପଡ଼ିଲେଣି । ଏପରି ଘୋଡ଼ା ଆଣିବାର

ମହଲିବଟା କଣ ? କେତେ ଲୋକ କେତେ ପ୍ରକାର କଥାବାର୍ତ୍ତା ହେଲେ ।

ପରଦିନ ସକାଳୁ ମାଗୁଣି ଗୁରୁ ଗାଧୋଇପାଧୋଇ ଦିଅଁ ଦର୍ଶନ କରି ଘୋଡ଼ା ସଜ କରିବାକୁ ଆଦେଶ ଦେଲେ । ଘୋଡ଼ା ସଜ ହେଲା—ଆଗରେ ପଛରେ ଦୁଇ ଜଣ ମନୁଷ୍ୟ ରହିଲେ । ଗୁରୁ ଯାଇ ଘୋଡ଼ା ଉପରେ । ମୋଟା ସବାର ପାଇ ଘୋଡ଼ା ଚାରି ଗୋଡ଼ ଉଠାଇ ବଡ଼ନ ନୃତ୍ୟ ଆରମ୍ଭ କଲା । ଆଗପଟ ଲଗାମ ଧରି ଦୁଇଜଣ ଟାଣିବାକୁ ଲାଗିଲେ, ପଛଆଡ଼ୁ ମଧ୍ୟ ଦୁଇ ଜଣ ଘୋଡ଼ାକୁ ଠେଲୁଥାନ୍ତି । ବହୁ କଷ୍ଟରେ ଘୋଡ଼ା ଲୁଣ୍ଡୁଣ୍ଡୁ ଶବ୍ଦ କରି ଅଗ୍ରସର ହେଲା । ଗୁରୁଙ୍କ ଅଷ୍ଟାଙ୍ଗ ଶରୀରରୁ ଝାଳ ବହି ଯାଉଥାଏ । ଟୋଟିଏ କଥା ଗୋହିରୀ ପଡ଼ିଲା, ଘୋଡ଼ା କାହାରି କଥା ନ ମାନି ସଲାମ କଲା ପ୍ରାୟ ଆଗ ଦୁଇ ଗୋଡ଼ ଉପରକୁ ଉଠାଇ ଗୁରୁଙ୍କୁ ଅସ୍ତେ ପିଠି ଉପରୁ ଖସାଇ ପକାଇଲା । କଣ୍ଟା ଫୁଟିଯାଇ ମାଗୁଣିଙ୍କ କୋମଳ ଅଙ୍ଗ ଅନେକ ସ୍ଥାନ କ୍ଷତବିକ୍ଷତ ହୋଇଗଲା ।

ଆଉ ଘୋଡ଼ା ଉପରେ ବସିବା ଆବଶ୍ୟକ ବା ସୁଖକର ହେଲା ନାହିଁ । ଅସ୍ତେ ଅସ୍ତେ ଗୁରୁ ଚାଲିବାକୁ ଲାଗିଲେ—ଯାଇ ଦୁଇ ଘଡ଼ି ବେଳ ଥାଉଁ ଘୋଡ଼ା ସହିତ ସମ୍ମୁଖ ଘରେ ହାଜର । ସମସ୍ତେ ଏ ଦୃଶ୍ୟ ଦେଖି ସ୍ତମ୍ଭୀଭୂତ । କେହି କିଛି ମର୍ମ ବୁଝି ପାରିଲେ ନାହିଁ । ମାଇପେଯାକ ଘର ଭିତରୁ ଆସି ଦାଣ୍ଡ ଦୁଆରେ ଘୋଡ଼ା ଦେଖିବାକୁ ଲାଗିଲେ । ଅତି ସୁନ୍ଦର ଘୋଡ଼ା—ନୂଆ ଚକଚକ ମଖମଲ ସାଜ ବେକରେ ଘଣ୍ଟି-

ଘାଗୁଡ଼ିମାଳ, ମୁଣ୍ଡଠାରୁ ଲାଞ୍ଜ ପର୍ଯ୍ୟନ୍ତ ଅତି ସୁନ୍ଦର ସାଜ ଦିଆ ଯାଇଅଛି । ନୂଆ ଲଗାମ, ନୂଆ ଜିନ ବେଶ୍ ମାନୁଅଛି । ଘୋଡ଼ାର ଦାମ ସମ୍ବନ୍ଧରେ ଉତ୍ସାହୀର୍ ବାଚାଳ ରକମର ଗଳ୍ପ ସୃଷ୍ଟି ହେବାକୁ ଲାଗିଲା । କିଏ କହିଲା—ପାଞ୍ଚ ଶହ, କେହି କେହି ମଧ୍ୟ ପାଞ୍ଚ ହଜାର ଟଙ୍କା ପର୍ଯ୍ୟନ୍ତ ଉଠିଲେ । କେହି କେହି ଘୋଡ଼ାର ଜନ୍ମ ପାରସ୍ୟ ଦେଶ ବୋଲି ସ୍ଥିର କରି ନେଲେ ଏବଂ ଲାଟ ସାହେବ ଏ ଘୋଡ଼ା କିଣି ଆଣି ଗୁରୁଙ୍କ କଟକ ଡିକାଲ ଉପହାର ଦେଇଥିବା କଥା ମଧ୍ୟ ଅନତିବିଳମ୍ବରେ ସେ ଜନସଙ୍ଘ ମଧ୍ୟରୁ ବାହାରି ପଡ଼ିଲା । ଅସଲ କଥା, ଏପରି ଗୋଟିଏ ସାଜ ଲଗାଇଥିବା ଘୋଡ଼ା ସେ ଗ୍ରାମର କେହି ଦେଖିବାତ ଦୂରର କଥା, କଳ୍ପନାଚକ୍ଷୁରେ ମଧ୍ୟ ଦେଖିପାରି ନ ଥିଲେ । ଏସବୁ ସଙ୍ଗେ ଘୋଡ଼ାର ଗୁଣ ଅପୂର୍ବ । ଏକା ଦୋଷକେ ସବୁ ଗୁଣର ମୁଣ୍ଡ ଖାଇବା କଥା । ନିତାନ୍ତ ସନ୍ଦେହ-ମତି ବ୍ୟକ୍ତି ବଢ଼ିକର କୂଟବାପଟ୍ୟ ନ ବୁଝି ତାକୁ ସ୍ୱର୍ଗର ଜୀବ ମନେ କରିବା ଏ ସଂସାରର ନିତ୍ୟନୈମିତ୍ତିକ ଘଟଣା ।

ଗୁରୁ ଗୃହମା ଉପରକୁ ଯାଇ ବସି ପଡ଼ିଲେ । ଅଙ୍ଗ ଶରୀରରୁ ଝାଳ ବହୁଥାଏ । ଝାଳ ଲାଗି କଣ୍ଟାକ୍ଷତ ସ୍ଥାନମାନ ଶୀତେଇ ହେଉଥାଏ ଓ ପୋଡ଼ୁଥାଏ । ବାଳକ ବାପୁଡ଼ା ଗାମୁଛା ଖଣ୍ଡେ ଧରି ବିଞ୍ଚିବାରେ ବ୍ୟସ୍ତ ।

ସମ୍ମୁଖ ଘର ଭିତରେ ଦାଣ୍ଡରେ ଗୃହଅଙ୍କେ କୋଳାହଳ— କଥା କଣ ? ଯିବାର ଗୁରୁବଟା ମନ ହୋଇ ନାହିଁ, ଘୋଡ଼ା ନେଇ ଏପରି ଭାବରେ ଆସିବାର ମତଲବ କଣ ? ସମ୍ମୁଖ କୁଅଁଡ଼ ଥିଲେ, ହଠାତ୍ ଆସି ଗୁରୁଙ୍କ ଗୋଡ଼ଧୁଆ ପାଣିଆର ବ୍ୟବସ୍ଥା

ଭୁଟିଲେ । ମାଗୁଣିଙ୍କ ମୁହଁରେ ଅଜ ହସ ନାହିଁ, କଥା ନାହିଁ, ମୁହଁଟା କଖାରୁ ପରି କରି ତଳକୁ ଚାହିଁ କଣ ଭାବୁଥାନ୍ତି । ସମୁଧି କହି ପକାଇଲେ—"ଗୋଡ଼ ଧୁଅ, ପାନଖାଅ, ଅଭ ସେପରି ବସି ରହିଲେ କଣ ହେବ । ଘର ଭିତରକୁ ଚାଲ, ଠା'ପୀଢ଼ାର ବନ୍ଦୋବସ୍ତ ହେଲାଣି ।"

ଗୁରୁ ତ ଅଗ୍ନିଶର୍ମା, ଦେହ ତାତି ଥାଉଥାଏ । ତୁଣ୍ଡରୁ କଥା ବାହାରୁ ନ ଥାଏ, ବହୁ କଷ୍ଟରେ କହିଲେ—"ନା ନା, ସେପରି ହେବ ନାହିଁ । ଥରକୁ ଥର ଏପରି ଅପମାନ ପାଇବାକୁ ମୁଁ ତୁମ ଘରକୁ ଆସି ଯାଇ ପାରିବି ନାହିଁ । ଆଗେ ବୋହୂ ବିଦା କର; ପଛେ ଆଜ ସବୁ । ସେ ଥର ହରବର କରି ମତେ ତିନିଶ ଟଙ୍କା ଦଣ୍ଡ ଅଣିଲ । ପୁଣି ତୁମ ଘରେ ଖାଇବି ।"

ସମୁଧି ଏକଥା ଶୁଣି ଭାବା । ଘର ଭିତରକୁ ଯାଇ ସବୁ କହିଲେ । ଘରେ କୋଳାହଳ ଆରମ୍ଭ ହେଲା । ମାଇପେଯାକ ଗୁରୁଙ୍କ ସପ୍ତପୁରୁଷ ଉଦ୍ଧାର କରିବାକୁ ଲାଗିଲେ । ମାତ୍ର ଗୋଡ଼ା ଯେନ ଏପରି ଆସିବାର ମର୍ମ କେହୁ ବୁଝି ପାରିଲେ ନାହିଁ । ଶେଷରେ ବୁଢ଼ୀ ସମୁଧୁଣୀ ସମସ୍ତଙ୍କ ସନ୍ଦେହ ଭଞ୍ଜନ କଲେ ।

ଝିଅ ଅଜୁ ବିଦା କରିବାକୁ ହେବ । ସେତେବେଳ ପର୍ଯ୍ୟନ୍ତ କିଛି ଠିକ୍ ନାହିଁ । ଲୁଗା କିଣିବାକୁ ହାଟକୁ ମନୁଷ୍ୟ ପଠାଗଲେ, ଭାରଖୋଳ ଯୋଗାଡ଼ ହେଲା । ଗୁଣ୍ଡିଅ ଡକା ଯାଇ ମୁଆଁ ଲଣ୍ଡୁ, ମନୋହର ମିଠାଇ ତିଆର ହେଲା । ସୁଆସି ଗଜଡ଼ ବନ୍ଦୋବସ୍ତ ମଧ୍ୟ ଠିକ୍ କରାଗଲା । ଝିଅ କାନ୍ଦିବାକୁ ଲାଗିଲା ।

ମାଗୁଣି ଏ ସବୁ ଦେଖିଶୁଣି ମନେ ମନେ ଟିକିଏ କ୍ଷୁବ୍ଧ ହେଲେ । ଏଥର ଅସି ଭାକବାରୁ ଗୋଡ଼ ହାତ ମୁହଁ ଧୋଇ ଖାଇବାକୁ ବାହାରୁ ପଡ଼ଲେ । ଘୋଡ଼ା ଦାନା ଖାଇଲ, ଗୃହର ବାକର ଖାଇ ପିଇ ସୁସ୍ଥ ହେଲେ । ତହିଁ ଅର ଦନ ଘାହାନ୍ତାରୁ ଗୁରୁ ବୋହୂ ଘେନ ବାହାରଗଲେ । ଯଥାସମୟରେ ଯାଇ ଘରେ ପହଞ୍ଚିଲେ । ଯେପର ଗୋଟିଏ ଗଡ଼ ଜିଣି ଅସିଅଛନ୍ତି । ଯାହାକୁ ଦେଖିଲେ ମୁହଁ ଫୁଲାଇ ଲମ୍ବା ଲମ୍ବା କଥା କହନ୍ତି । ବଦନାପୁରରେ ଯେ ଏ କଥା ଶୁଣିଲ ଟିକିଏ ମୁରୁକେଇ ହସିଲ । ମାତ୍ର ବୈଠକ ବେଳେ ତାଙ୍କ ଅଗରେ ପ୍ରଶଂସାର ସୀମା ନାହିଁ ।

ଏହାପରେ କେତେ ଦନ ବତିଗଲା । ଦନେ ପଞ୍ଚାଏ ଦକ୍ଷିଣୀ ବଣିଅ ସୁନା ଅଲଙ୍କାର ଘେନ ବଦନାପୁର ଅସିଲେ । ମଫସଲ ଗାଁରେ ସେ ସବୁ କଣିବ କଏ ? ଜଇ ପିଣ୍ଡା ଦେଖି ଅସି ଗୁରୁଙ୍କ ଦୁଆରେ ପହଞ୍ଚିଲେ । ଅଲଙ୍କାର ଗୁଡ଼କ ଦେଖିବାକୁ ଖୁବ୍ ସୁନ୍ଦର, ଅାଖି ଝଲସି ଯାଉଥାଏ । ଯେତେ ଥିଲେ କଣ ହେବ, ଏପରି ଖଣ୍ଡେ ସୁନ୍ଦା ବୋହୂଠାରେ ନାହିଁ, ଝିଅଙ୍କ କଥା ପଚ୍ଚୁରୁଛି କଏ ? ଯେ କୌଣସି ପ୍ରକାରେ କଣିବାକୁ ହେବ । ଘରେ ଟଙ୍କା ନଦାରଦ—କଣ କରିବାକୁ ହେବ ? ମାଗୁଣି ଝୁଲି ଝୁଲି ଯାଇ ମହାଜନ ଦୁଆରେ ପହଞ୍ଚିଲେ । ବୁଢ଼ା ଗୁରୁଙ୍କୁ ଦେଖି ଅଖା ଖଣ୍ଡେ ମକାଇ ଦେଇ ହାତ ଯୋଡ଼ି ପାଖକୁ ବସିଲ । ବଟୁଆ ଅଣି ମିଠା ଗୁଣି ପାନ, ଚୂଅମିଶା କଷା ଗୁଅ, ବାଲୁଅ ଖଇର ଦେଇ ଖଣ୍ଡେ ପାନ ଭାଙ୍ଗି ଦେଲ । ଗୁରୁ ହିକିଏ ଚୋବାଇ କାଢି ପଚାରଲେ ।

ମହାଜନ ବଡ଼ ଦୁନିଆର ଲୋକ । ଗୁରୁଙ୍କ ମୁହଁରୁ ଗୃହି ଆସିବାର ମର୍ମ ଠଉରାଇ ପାରିଲାଣି । ସେ କରଜ ଦେଇ ଗାଁ ଗୋଟାକ ଲୋକଙ୍କୁ ହାତ କରି ପାରିଲାଣି, ଗୁରୁ ତା ପାଖରୁ ଖସିଯିବା ବଡ଼ ସହଜ କଥା ନୁହେ । ମହାଜନ କୁହା ମୁହଁ ଏଡ଼େ କରି ମାଳ ଠକ୍ ଠକ୍ କରିବାକୁ ଲାଗିଲା ।

ଗୁରୁ କହିଲେ—"ମହାଜନେ, କଥା କଣ କି, ବଣିଆ କେତେ ଅଳଙ୍କାର ବାକି ଅଣିଚନ୍ତି, ପିଲାଙ୍କର ଭାରି ଇଚ୍ଛା । କଣ କରିବ, ପଇସାଟିଏ ବୋଲି ହାତରେ ନାହିଁ । ଟଙ୍କା ଦୁଇଶ ନ ହେଲେ ନୁହେ । ତୁମେ ଥାଉଁ ଥାଉଁ ମୋର ଏ ବେଭାର ସାରିଯିବ ।"

ମହାଜନ—"ଆଜ୍ଞା, ମୋର ମଧ ପଇସା ଅଭାବ ପଡ଼ିଲାଣି, ପିଲାଛୁଆଙ୍କ ଜଳୁଡ଼ା କୁଣ୍ଡ ଧରିଲେଣି, ପାନ ଗୁଆ ଗୁଣ୍ଡିରେ ଗୁର ପଇସା ଖରଚ । ଆପଣ ଯାହା ନେଲେ ଅଜାଯାଏ ଗୋଟାଏ ପଇସା ଅସୁଲ ପଡ଼ିଲ ନାହିଁ; ସୁଧ ମୂଳ ମିଶି କେତେ ହେଲାଣି ।"

ଗୁରୁ କହିଲେ—"ମୁଁ ସବୁ ହିସାବ ନିକାଶ କରିଦେବି । ମୋର ଏତେ ଜମି ବାଡ଼ି, ମନରେ କିଛି ଭାବ ନାହିଁ । ବୁଝିଲ, ତୁମ ବାଡ଼ି ତରଫକୁ ଲାଗି ଯେଉଁ ବାର ମାଣ ଅଛି, ଶେଷକୁ ତୁମକୁ ଦେବି ମୋର ସବୁ ହିସାବ ନିକାଶ ହୋଇଯିବ ।"

ପୁଣି ଖଣ୍ଡେ ତମସୁକ ଲେଖାପଢ଼ି ହେଲା—ଗୁରୁ ଦୁଇଶ ଟଙ୍କା ନେଇ ଅଳଙ୍କାର କିଣିଲେ ।

ଏ ଘଟନାର ପ୍ରାୟ ବର୍ଷକ ମଧ୍ୟରେ ଗୁରୁଙ୍କ କୋଳପୋଛା ଝିଅ ଚମ୍ପାର ବିବାହ ପଡ଼ିଲା । ବରଘର ଠିକ୍ ହେଲା । କଣ

କରବାକୁ ହେବ—ହାତରେ ଯେ ପଇସାଟିଏ ବୋଲି ନାହିଁ । ଅଜି କାଲି ତ ବଡ଼ ଘରର ବଡ଼ କଥା । ବରଘରର ଅବସ୍ଥା ଖୁବ୍ ଭଲ, ଏ ବାଦ୍ ଲାଗିଛି ବ ଦ ଅକ୍ଷର ପଢ଼ା । ବରଘର ଯାହା ଦାବି କଲେ, ଗୁରୁ ସମ୍ମୁଖରେ ମତ ଦେଇ ମହାପ୍ରସାଦ ନିର୍ବନ୍ଧ କରି ଦେଇଅଛନ୍ତି । ଅଉ କମରେ ଟଙ୍କା ଗୁଡ଼ିଏ ହଜାରରୁ ଊଣା ହେଲେ ଚଳିବ ନାହିଁ । ଅଣ୍ଠା ବୋଲି କୁଟୀ ନଡ଼ କାନ୍ଥ । ଏତେଗୁଡ଼ାଏ ଟଙ୍କା ପୁଣି କେଉଁଠୁ ଆସିବ ? ଖର୍ଚ୍ଚ କରି କରି କୁଳକରେ ବୁଡ଼ି ଗଲେଣି ନ ବୁଝି ନ ସୁଝି ଏପରି କବାବଟାଏ ଦେଲେ କାହିଁକି ?

ଗୁରୁ ପୂର୍ବପରି ବେପରବାଏ, ପ୍ରଫୁଲ୍ଲ । କେଉଁ ପଗୁରିଲେ କହନ୍ତି—"ସେ ସବୁ ହୋଇଯିବ ପେ—ମୁଁ କଣ ନ ବୁଝି ଏ ସବୁ କଥାରେ ହାତ ଦେଇଛି ?"

ବିବାହ ଆଠ ଦଶ ଦିନ ଥାଉଁ ବରଘର ଧରି ବସିଛି—କନ୍ୟାର ସ୍ଵଭାବିକ ନଗଦ ଦୁଇ ହଜାର ଟଙ୍କା ନ ଦେଲେ ବିଭାଘର ଭାଙ୍ଗିଯିବ ପଛକେ ନିର୍ବନ୍ଧ ବୋଲି ବଳିବ ନାହିଁ । ଏତେବେଳେ ସ୍ଵରଙ୍କ ଗୁରୁଙ୍କ ନିଦ ଭାଙ୍ଗିଲା । ଅଧମଉଦ୍ଧାରଣ କ୍ଲିପଦଭଞ୍ଜନ ଗୋବର୍ଦ୍ଧନ ଦୁଆରେ ବାଡ଼ି ଠକ୍ ଠକ୍ କରି ଯାଇ ହାଜର ହେଲେ । ଅନେକ ସମୟ ସବୁ ବୁଝାଇ କହିଲେ ।

ସାହୁ ଏଥର ସ୍ଵର ବଦଳାଇ ଦେଲା । କୌଣସିମତେ ଟଙ୍କା ହୋଇ ପାରିବ ନାହିଁ । ଅଜି ସୁଦ୍ଧା ପୋଇ ଦସ୍ତାବିଜରେ ଗୁରୁଙ୍କ ଉପରେ ହିସାବ ହେଲା ତିନି ହଜାର ସାତଶ ନ ଟଙ୍କା ତେର ଅଣା । ଆଉ ଟଙ୍କା ହୋଇ ପାରିବ ନାହିଁ ।

ଗୁରୁଙ୍କ ମସ୍ତକ ଉପରକେନ୍ଦ୍ର ରଙ୍ଗ ପାରିଲା ନାହିଁ । କଣ କରିବେ—ମହାପ୍ରସାଦ ନିବନ୍ଧ । ଦେଶରେ ଗ୍ରାମରେ କେତେ ଅପନିନ୍ଦା ସହିବାକୁ ହେବ । ମହାଜନକୁ କହିଲେ—"ହାଲ୍ ସାବକ ଏକାଠି କରି ରେଜେଷ୍ଟ୍ରି ରହଣିବନ୍ଧକ କରିଦେବି । ଟଙ୍କା ଗୃହଜାର ଦିଅ, ନ ଦେଲେ ମୋ ମୁଣ୍ଡ ତଳକୁ ପଡ଼ିଯିବ । ମହାଜନ, କିଛି ଚିନ୍ତା କରିବ ନାହିଁ ମୁଁ ସବୁ ହିସାବ ନିକାଶ କରିଦେବି ଯେ ।"

ମୂଳ ଅଠ ହଜାର ଟଙ୍କାରେ ଦଲିଲ୍ ଲେଖାପଢ଼ି ରେଜିଷ୍ଟ୍ରି ହୋଇଗଲା । ଶତକଡ଼ା ପଚାଶ ହାରରେ ସୁଧ ବସିଲା । ଗୁରୁଙ୍କ ସମ୍ପତ୍ତିର ପ୍ରାୟ ବାରପଣ ବନ୍ଧକ ପଡ଼ିଲା । ଗୁରୁ ଗୃହଜାର ଟଙ୍କା ନଗଦ ନେଇ ବିବାହ କାର୍ଯ୍ୟ ଶେଷ କଲେ—ମୁଣ୍ଡ ତଳକୁ ପଡ଼ିଲା ନାହିଁ । ଯଥା ସମାରୋହରେ ଗୁରୁଙ୍କ କନ୍ୟାର ବିବାହ ଶେଷ ହୋଇଗଲା ।

ଏ ଘଟନା ଯିବାର ବର୍ଷ ଦୁଇଟା ହୋଇ ନାହିଁ ପଡ଼ିଲା ପନ୍ଦର ସାଲ ଦୁର୍ଭିକ୍ଷ । କ୍ଷେତବାଡ଼ି ଧୋଇରେ ବାରପଣ ନଷ୍ଟ ହୋଇଗଲା, ଯାହା କିଛି ବାକୀ ଥିଲା, ମରୁଡ଼ିରେ ସବୁ ଶେଷ । ଲୋକେ ହାହାକାର କରି ଗୁରୁଙ୍କ ଦୁଆରେ ଜମା ହୁଅନ୍ତି । ସାହୁ ଦୁଆରକୁ ଯିବାର ଉପାୟ ନାହିଁ । ଦେଖିଲେ, ଦେବା କଥା ଦେଣିକି ଥାଉ ଠେଙ୍ଗାରେ ମୁଣ୍ଡ ଫଟାଇ କୁକୁର ଲଗାଇ ଦିଏ । ଧାନ ମୁଗ ଗୋଟିକଠୁଁ ବିକ, କୋଳଥ ମାଣ୍ଡିଆ ଦୁନାରେ କାଲ କାଟୁଥାଏ ।

ଗୁରୁଙ୍କ ପ୍ରଧାନ ଚିନ୍ତା ମାଡ଼ି ବସିଲାଣି । ଘରେ ଯାହା ଧାନ ଥିଲା, ଅଧିକାଂଶ ବାଣ୍ଟି ସାରିଲେଣି । ଘରଖର୍ଚ୍ଚ ବର୍ଷକ ଚଳିବା

ଦୁଷ୍କର । ଅଇଁଠାବୋଇ ବୁଢ଼ୀ ବଡ଼ ବିରକ୍ତ ହୋଇ ବୁଢ଼ାକୁ ଗାଳି ଦିଅନ୍ତି । ବୁଢ଼ାଙ୍କର ସବୁ କଥାରେ ସେହି ଉତ୍ତର—ମତେ ସଗୁଣ୍ଠ ଚାହିଁବ, ମୁଁ ସମସ୍ତଙ୍କ ହିସାବ ନିକାଶ କରିଦେବି ।

ଗୋବର୍ଦ୍ଧନର ବର୍ତ୍ତମାନ ପଞ୍ଚମ ବୃହସ୍ପତି, ଗାଁ ଟୋକାଙ୍କ ତାର ଖାତକ ହୋଇ ସାରିଲେଣି । ଧାନ କୋଳିଏ କୋଡ଼ିଏ ଦେଇ ଜମିଜମା ଘରବାଡ଼ି ବନ୍ଧକ ଲେଖାଇ ନେଉଅଛି । ମନରେ ଭାରି ଆନନ୍ଦ—ଅଳ୍ପ ଦିନ ପରେ ଗ୍ରାମର ଚକ୍ରବର୍ତ୍ତୀ ହୋଇ ବସିବ ।

ପ୍ରତିଦିନ ଚନ୍ଦ୍ରଙ୍କ ଦୁଆରେ ପଣ ପଣ କାଙ୍ଗାଳି ଜମା । ଘରେ କିଛି ନାହିଁ, ଉପାୟ କଣ ? ଅଗତ୍ୟା ଗୋବର୍ଦ୍ଧନର ଆଶ୍ରୟ ନେବାକୁ ହେଲା । ବାକି ସମ୍ପତ୍ତିତକ ବନ୍ଧକ ନେଇ ୨୫ ଭରଣ ଧାନ, ୩ ଭରଣ କୋଳଥ କରଜ ଆଣିଲେ । ଦାଣ୍ଡଦୁଆରେ ନାଲିଘର ତିଆର ହେଲା । ଦୁଇଜଣ ପୂଜାହାରୀ ରାନ୍ଧିବାରେ ଲଗିଅଛନ୍ତି । କାଙ୍ଗାଳିମାନଙ୍କୁ ଭାତ, କୋଳଥଯାଉ, ତୋରାଣି ବଣ୍ଟା ଲାଗିଛି ।

ତାଙ୍କ ଘରେ କାହାରି ମନରେ କିଛି ନାହିଁ । ବୁଢ଼ା ଯାହା କଲେ, କେହି ପାଟି ଫିଟାଇ ନ ଥିଲେ । କେବଳ ବୁଢ଼ୀଟା ବେଳେ ବେଳେ ଗୁଇଁଗୁଇଁ ହୁଏ । ସବୁବେଳେ ଗୁରୁଙ୍କ ତୁଣ୍ଡରୁ ସେହି ଏକ କଥା—"ମୁଁ ସମସ୍ତଙ୍କ ହିସାବ୍ ନିକାଶ କରିବି । ତା ନ ହେଲେ ଶେଷରେ ମୋର ଏତେ ଜବାବଦାୟୀ ହେବ କିଏ ?"

ଦିନ ପରେ ଦିନ ଗଡ଼ିଗଲା । ମହର୍ଗ କଟିଗଲାଣି । ଅଇଦା ସନକୁ ଫସଲ ୧୬ ପଣ ହୋଇଅଛି । ଦାଣ୍ଡ ଚଳାଗଲାଣି । ସମସ୍ତେ ଯେ ଯାହା କାର୍ଯ୍ୟରେ ଲାଗିଅଛନ୍ତି ।

ଗୁରୁ ସବୁ କଥାରେ ସବୁବେଳେ ପ୍ରସନ୍ନ । ମୃତ୍ୟୁ ଉପରେ ଏତେ କରଙ୍କ ରଖି ସେ ଦିନକ ପାଇଁ ଚିନ୍ତିତ ନୁହନ୍ତି ।

ଗୋବର୍ଦ୍ଧନ ସାହୁ ତାର ବାଡ଼ିଠାରୁ ଗୁରୁଙ୍କ ବାଲ ଦେଖି ମନେ ମନେ ଭାରି ଖୁସି । ଅଳ୍ପଦିନ ପରେ ଏହି ସବୁ ଜମି ହାତରେ ପଡ଼ିବ । ବାଡ଼ି ଦୁଆରମୁହଁରେ ଗୃହଁଲେ ସବୁ ଦେଖାଯିବ । ଏବେ ଦିନେ ଘର ପର ଘରଟାଏ ହୋଇଯିବ । ପୁଅ ଦୁଇଟା ରାଜ ଦିନ ବଲ୍ଟାଡ଼ି କାମ କରି ଖରି ଦଉଡ଼ି ହୋଇଗଲେଣି । ବୋହୂ ଦୁଇଟା କଂସା ପିତ୍ତଳ ଖଣ୍ଡୁ ଛଡ଼ା ରୁପାର ମୁହଁ ଦେଖି ନାହାନ୍ତି— ଘର କାମଦାମ କରି ରାତ ଦିନ ତର ନାହିଁ ।

ଗୁରୁଙ୍କର ହଠାତ୍ ସାନ୍ନିପାତିକ ଜ୍ୱର ଆରମ୍ଭ ହେଲା । ଡାକ୍ତର ଚିକିତ୍ସା କରିବାକୁ ଆସିଲେ ମନା କରି ଦିଅନ୍ତି । ଗାଁଠାଯାକ ଲୋକ ପ୍ରତିଦିନ ଦୁଇବେଳା ଗୁରୁଙ୍କ ଦୁଆରେ ହାଜର । ଗ୍ରାମ ତମାମ ଶୋକାଏ ଆଶଙ୍କା ଓ ଦୁଃଖର ଛାୟା ସ୍ପଷ୍ଟ ଜଣା ପଡ଼ୁଅଛି । ଗ୍ରାମର ଇତର ସାଧାରଣ ବାଳକ,-ବୃଦ୍ଧ ସମସ୍ତେ ଆସି ଗୁରୁଙ୍କ ଚରଣରେ ମୁଣ୍ଡରେ ହାତ ବୁଲାଇ ଦେଇ ଯାଉଅଛନ୍ତି । ଜ୍ୱରର ପ୍ରକୋପ କ୍ରମେ ବଢ଼ିବାକୁ ଲାଗିଲା, ଗୁଟିଏ ଦିନ ମଧ୍ୟରେ ଆଷାଢ଼ ଶୁକ୍ଳ ଏକାଦଶୀ ବୁଧବାର ଦିନ ଠିକ୍ ସନ୍ଧ୍ୟା ସମୟରେ ଗୁରୁଙ୍କ ଆତ୍ମା ଅସୀମପୂର୍ଣ୍ଣ ପରମାତ୍ମାସହ ଯୁକ୍ତ ହୋଇଗଲା ।

ଗାଁ ଗୋଠାକଣ୍ଟାକ ଚହଳ ପଡ଼ିଗଲା । ମାଲ ଭାଇ ଡଢସ୍ୱ ହୋଇ ଅସିଲେ । ସଙ୍ଗେ ସଙ୍ଗେ ଗୁରୁଙ୍କ ନଶ୍ୱର ଦେହ ଶ୍ମଶାନକୁ ନୀତ ହେଲା ।

ଅଗୋ ମୁଖାଗ୍ନି ଦେଇ ଗ୍ରାମ ଅଡ଼କୁ ଦୃଷ୍ଟି ପକାଇ ଦେଖିଲ ଭୟଙ୍କର ଅଗ୍ନ୍ୟୁତ୍ପାତ । ଧାଇଁ ଧାଇଁ ହୋଇ ଗାଁ ଗୋଠାକ ପୋଡ଼ିଗଲ ପ୍ରାୟ ଦେଖା ଯାଉଅଛି । ବଡ଼ କୋଳାହଳ ଶୁଭୁଅଛି । "ଧାଇଁପଡ଼ ହୋ" ଶବ୍ଦ ସ୍ପଷ୍ଟ ଶୁଣାଯାଉଅଛି । ବାଉଁଶଗୁଡ଼ାକ ଠୋ ଠୋ ହୋଇ ଫୁଟୁଅଛି । ହଠାତ୍ ସମସ୍ତେ କାର୍ଯ୍ୟ ଶେଷ କର ଗାଁ ଅଡ଼କୁ ଧାଇଁଲେ । ଏଣେ ଚିତା ଧୂ ଧୂ ହୋଇ ଜଳିବାକୁ ଲଗିଲ ।

ମହାଜନ ଘରେ ନିଆଁ ଲଗି ସବୁ ପୋଡ଼ି ଯାଉଅଛି । ଚୋରୀ ପେଟର ସିନ୍ଦୁକ କଂସା ବାସନ ସବୁ ଦାଣ୍ଡଦୁଆରେ ଜମା । ଅଗ୍ନି ଲେଲହ୍ୟମାନ ଜିହ୍ୱା ବିସ୍ତାରି ସବୁ ଗ୍ରାସି ଯାଉଅଛି; ଏ ଭୟଙ୍କର ଅଗ୍ନି ଛଡ଼ାଇବାକୁ କେହି ସାହସ କରି ପାରୁନାହାନ୍ତି । ଗୋବର୍ଦ୍ଧନ କହିବା ଅନୁସାରେ ସବୁ ଜିନିଷପତ୍ର ଗୁରୁଙ୍କ ଘର ଭିତରକୁ ବୁହା ହୋଇଗଲ । ଶିଶ୍ରେ ପାଳଦାଉଡ଼ି ଟେକରେ ପକାଇ ମହାଜନ ସାଷ୍ଟାଙ୍ଗ ପ୍ରଣିପାତପୂର୍ବକ ପଡ଼ି ରହିଥାଏ । ଅଗ୍ନି ଶାନ୍ତ ଉଦ୍ଦେଶ୍ୟରେ ଘିଅ ଗୁଡ଼ ନୁଆ ଲୁଗା ନିଆଁକୁ ପକାଇ ଦିଆଗଲ ।

ଏଣେ ମହାଜନ ଘର ଅଗ୍ନି, ତେଣେ ଶ୍ମଶାନରେ ଗୁରୁଙ୍କ ଚିତା ପ୍ରବଳ ବେଗରେ ଜଳୁଥାଏ । ଦୁଇ ଅଗ୍ନି ଭେଟ ହେବା ପରେ ଦପ୍‌କରି ନିଆଁ ତଳେ ପଡ଼ିଗଲ । ଲେଖିବା ଅନାବଶ୍ୟକ,

ମହାଜନର ତମସୁକ ପେଟରାଟି ଅଗ୍ନିରେ ନିକ୍ଷିପ୍ତ ହେଲା । ଗୁରୁଙ୍କ ହିସାବ ନିକାଶ କଥା ଏତେ ବେଳସରକୁ ସମସ୍ତେ ହୃଦୟଙ୍ଗମ କରି ପାରିଲେ ।

୬ମାଗୁଣିଙ୍କ ଶୁଦ୍ଧି ଶ୍ରାଦ୍ଧ ମହାସମାରୋହରେ ସମ୍ପନ୍ନ ହେଲା । ମହାଜନର ଭବିଷ୍ୟତ ସୁଖ ସମ୍ବନ୍ଧି ଆଶା ସମୂଳେ ଲୁପ୍ତ ହେଲା । ଏପରି ଭାବରେ ହିସାବ ନିକାଶ ହେବ ବୋଲି ବିଶ୍ବାସ ସ୍ୱପ୍ନରେ ଭାବି ନ ଥିଲା ।

ସାହୁର ଅବସ୍ଥା ଦେଖି ଦନେ ବାଇବୋଲି ମିଶ୍ରେ ବୋଲିଦେଲେ—

"ଦୁଃଖେ ଅର୍ଜିତ ଯେତେ ଧନ, ସୁଖେ ସେ ନୁହେ ପ୍ରୟୋଜନ ।"

ଲେଖକ—ଦିବ୍ୟସିଂହ ପାଣିଗ୍ରାହୀ

# ଏତେ ପ୍ରଭେଦ

( ୧ )

୧୯୨୩ ଖ୍ରୀଷ୍ଟାବ୍ଦ—ଦିନକର ସନ୍ଧ୍ୟା ।

ରତନପୁରର ଧନେଶ୍ୱର ବାବୁଙ୍କ ଘରେ ବିବାହ ଉତ୍ସବ ଧୁମ୍ ଲାଗିଛି । ବରଯାତ୍ରୀମାନେ ଦକ୍ଷିଣପଟ ବାରଣ୍ଡାରେ ଆଳାପ-ରତ । ଅଦୂରରେ ପୁଷ୍ପିତ ମୁଚୁକୁନ୍ଦ ତାର ସୌରଭ ପସରା ମେଲି ଦେଇଛି, ଯେମିତିକି ହେମ ପାଇଁ ଏ ତାର ଶେଷ ଉତ୍ସର୍ଗ । ଏଣେ ଅନ୍ତଃପୁରରେ ବର ବିଗୁର୍ ବୀଣା ଓ ତାର ସମବୟସୀମାନଙ୍କ ପରିହାସ-ପ୍ରବଞ୍ଚନାରେ ବିବ୍ରତ ହୋଇ ପଡ଼ିଲାଣି ।

ହେମ ଓ ବୀଣା ଦୁଇ ଭଉଣୀ । ହେମ ବଡ଼—ତାହାର ଅଗ୍ର ବିବାହ ।

× × ×

ପ୍ରାୟ ଏତିକିବେଳେ କଲପଡ଼ିଆ ଅତିକ୍ରମ କରି ହୃଷୀକେଶ ଓ ତାର ସଙ୍ଗୀ ରାସ୍ତା ଉପରକୁ ଉଠିଲେ ।

ସମାଜସଂସ୍କାର, ଗୃହଶିଳ୍ପ, ସ୍ୱରାଜ, ଅସ୍ପୃଶ୍ୟତାବର୍ଜନ ଓ ଦେଶନିର୍ମାଣ ଆଦି ଅନେକ ଗୁରୁସମସ୍ୟା ଆଜି ଶିକ୍ଷିତ ଯୁବକର

ଭବିଷ୍ୟତକୁ ରୂପ ଦେଉଛନ୍ତି । ହୃଷୀ ଦେଖୁଛନ୍ତି ଦେଶସାରା ଏକ ପରିବର୍ତ୍ତନର ଆଭାସ ।

ରାସ୍ତାକୁ ଉଠି ହୃଷୀ ତାର ସଙ୍ଗୀକୁ କହିଲା, "କିନ୍ତୁ ଭାଇ, ସମାଜର ଅବର୍ଜନା ସଫା ନ କଲେ ସ୍ୱରାଜ୍ୟ କହ, ଓଡ଼ିଶା ପ୍ରଦେଶ କହ, ସବୁ ବୃଥା ।"

ମାଧବ ଶୁଣିଲା, କିନ୍ତୁ କିଛି କହିଲା ନାହିଁ ।

ମହାନଦୀ କୂଳରୁ ମଟରଗାଡ଼ିଟାଏ ଧୂଳି ଉଡ଼ାଇ ଛୁଟି ଆସିଲା ଏବଂ ଗୃହଁ ଗୃହଁ ଦୂର ପଥରେ ଉଭେଇ ଗଲା ।

ଦୁଇ ବନ୍ଧୁ ଧୂଳିଭୟରେ ରାସ୍ତାଧାରକୁ ଆଡ଼େଇ ଯାଇଥିଲେ । ହୃଷୀ କହିଲା, "ସେଥିଲାଗି କହୁଛି, ଜୀବନରେ ଯେତେଦୂର ସମ୍ଭବ, ଏ ଦେଶ ଯୁବକମାନଙ୍କର ସର୍ବପ୍ରଥମେ ସାମାଜିକ କୁପ୍ରଥା ବିରୁଦ୍ଧରେ ଲଢ଼େଇ କରିବା ଉଚିତ ।

ମାଧବ କହିଲା, ସମାଜରେ ଅନେକ କୁପ୍ରଥା ରହିଛି, ତା ଠିକ୍ କିନ୍ତୁ ସେ ସବୁକୁ ଦୂର କରିବାକୁ ହେଲେ ଭାଗ୍ୟପ୍ରତିଷ୍ଠା ଲୋଡ଼ା—ଉନ୍ମୂଳ ଆନ୍ଦୋଳନର ପ୍ରୟୋଜନ । ପଦେ ପଦେ ବିଘ୍ନ ଓ ବିପଦ ବରଣ କରିବାକୁ ହେବ, ଜନମତକୁ ଉପେକ୍ଷା କରିବାକୁ ହେବ । ଏହିପରି ସଂକଳ୍ପ କରି କେତେ ଜଣ ବାହାରିଲେ ଅବା ଅପ୍ରେ ଅସ୍ତ୍ରେ ସବୁ ଯିବ ।"

"ସବୁଠାରୁ ଜଘନ୍ୟ ହେଉଛି, ଆମ ସମାଜର ଏ ପଣପ୍ରଥା ବଙ୍ଗଳାରୁ ଆମଦାନୀ ହୋଇଛି । କାଲିକାର କାଗଜରେ ଯେଉଁ ଦୁଇଟି ବାଳିକାଙ୍କର ଆତ୍ମହତ୍ୟାର କରୁଣ ଖବରଣୀ ବାହାରିଛି, ଆଃ—"

"କଅଣ, କଅଣ, ବାହାରିଛି ?—" ମାଧବ କୌତୂହଳିତ ହୋଇ ପଚାରିଲା ।

"ଦୁଇଟି ଖୁବ୍ accomplished girl—ବରପଣ ଦେବାକୁ ପିତା ଅକ୍ଷମ ହୋଇ ସେମାନଙ୍କର ବିବାହ ଦେଇ ପାରୁ ନ ଥାନ୍ତି । ଅନେକ ଚେଷ୍ଟା କଲେ—ସମସ୍ତେ ଚାହିଁଲେ ଧନ, ଗହଣା, କୁହନ୍ତି, ହଜାର । ବିଚରା ବାପ କରେ କଅଣ ? ବାପର ଚିନ୍ତା ଓ କଷ୍ଟ ଦେଖି ଝିଅ ଦୁହେଁ ବିଟ୍ରିବିଚର ହୋଇ ବିଷ ଖାଇ ଦେଲେ । ଆଉ କଅଣ !—ଏଇ ତ ତୁମ ସମାଜର ଅବସ୍ଥା ।"

ମହାନଦୀର ସ୍ୱଚ୍ଛ ଜଳ ଉପରେ ଅସ୍ତଗାମୀ ସୂର୍ଯ୍ୟଙ୍କର କିରଣ ପଡ଼ି ଚକ୍ ଚକ୍ କରୁଥାଏ, ଯେପରି କ ମସ୍ତ ଏକ ରଙ୍ଗିନ୍ କାଚର ଚାଦର ଝଲମଲ କରୁଛି । ଦୂରରୁ ଶୁଭୁଥାଏ କ୍ଳାନ୍ତ ଧୀବରର କଣ୍ଠଖୋଲା ସଙ୍ଗୀତ ।

ତୃପ୍ତୀ ଓ ମାଧବ ନଈକୂଳେ ବସି ଅନେକ ବେଳ କଥା-ବାର୍ତ୍ତା ହେଲେ । ଦୁହେଁ ସେଇ ବର୍ଷ କଲେଜକୁ ନୂଆ ଯାଉଥାନ୍ତି । ତେଣୁ ଏହିପରି କେତେ ସନ୍ଧ୍ୟା କଟିଯାଏ ଏକସଙ୍ଗରେ, ତର୍କ ଓ ଅଲୋଚନାରେ । ସମାଜସଂସ୍କାର ଦିଗରେ ତୃପ୍ତୀର ଝୁଙ୍କ ଖୁବ୍ ବେଶି । ଥରେ ଅଧେ Debating Societyରେ ମଧ୍ୟ ସଂସ୍କାରକ ସାଜନ୍ତି । ଅନେକ ଶିକ୍ଷିତ ଯୁବକ ସଂସ୍କାରପ୍ରୟାସୀ—ସେ ନ ହେବ ବା କାହିଁକି ?

( ୨ )

ସେ ଦିନର ସନ୍ଧ୍ୟା ଓ ଆଜି ଏଥିମଧ୍ୟରେ ମହାନଦୀ କୂଳରେ କେତେକବାସୀ କେତେଟା ବାଲିଯାତ୍ରା ଦେଖି ସାରିଲେଣି ।

ରତନପୁରର ଧନେଶ୍ୱର ବାବୁଙ୍କ ମୁଚୁକୁନ୍ଦ ଗଛରେ ତିନି ମୁଥ ଫୁଲ ଫୁଟିଲଣି । ବୀଣା ମଧ୍ୟ ଏଥିମଧ୍ୟରେ 'ଅଡାମାଟ୍ରିକ' କହି କାଉଁକିପୁଚ୍ଛିଅଁ ରାତରେ ତିନି ଥର କଦଳୀ ଭେଳା ଭସାଇ-ଦେଇ ଅସିଛି ।

ଆଜି ଧନେଶ୍ୱର ବାବୁ କପାଳରେ ହାତ ଦେଇ ବସିଛନ୍ତି—ପାଖରେ ତାଙ୍କର ପତ୍ନୀ ଓ ଜଣେ ଅନ୍ତରଙ୍ଗ ବନ୍ଧୁ । ସମସ୍ତେ ଚିନ୍ତିତ ।

ବନ୍ଧୁ କହିଲେ, "ବୀଣାପାଇଁ ଚିନ୍ତା କରି କରି ଆପଣଙ୍କ ଦେହ ଅଧେ ଶୁଖି ଗଲାଣି । ଯାହା କରିବାର ତା ତ ଯେତେବେଳେ ହେଲେ କରିବାକୁ ହେବ, ଆଉ ଦ୍ୱିଧା କାହିଁକି ?"

ଧନେଶ୍ୱର ବାବୁ ପତ୍ନୀଙ୍କ ଅଡ଼କୁ ଚାହିଁଲେ ।

ବନ୍ଧୁ ପୁଣି କହିଲେ, "ଆଜି ଟିକିଏ ଓଜର କଲେ ଟ ୨୦୦୦ ଯୌତୁକ ଦେଇ ପାରନ୍ତି, ତେବେ ସାଇକଲ, ଚିପ୍ପୁଜଥର ଏସବୁ ମିଶିଲା ବେଳକୁ ସେଇ ହଜାରେ, ନୁହେଁ ଆଉ କଅଣ ?"

ଧନେଶ୍ୱର ବାବୁ କହିଲେ, "କାହୁଁ ପାଇବ ?"

"କିନ୍ତୁ ହୃଷୀ ପରି ଯୋଗ୍ୟ ପାତ୍ରଟିଏ ପାଇବା ସହଜ ନୁହେଁ । ଅଜିକାଲି ପାଠୁଆ ଟୋକାଙ୍କର ସବୁଠାରେ ଏଇ ଦର । ହୃଷୀର ବାପ କହନ୍ତି ଯେ, ସେ ଆଉ ବର୍ଷକେ ବି. ଏ. ପାସ କଲେ ତିନି ହଜାର ମୂଲ୍ୟ ହେବ ।"

"ତା ହୋଇ ପାରେ ?"—ଧନେଶ୍ୱର ବାବୁ ସନ୍ଦିଗ୍ଧ ହୋଇ କହିଲେ ।

"ତାଙ୍କ ବନ୍ଧୁ କହୁଥିଲେ, ବି. ଏ. ପାସ୍ କଲେ ଡେପୁଟୀ ହୋଇପାରିବେ ବୋଲି ତାଙ୍କ ବାପାଙ୍କର ବିଶ୍ୱାସ । ତେବେ ସେ ଯାହା ହେଉ, ଆପଣ ଆଉ କୁଆଡ଼େ ମନ ଦିଅନ୍ତୁ ନାହିଁ, ଧାର କରଜ କରି କାମଟା ଉଠାଇ ନିଅନ୍ତୁ ।"

ଧନେଶ୍ୱର ବାବୁଙ୍କର ଜମିବାଡ଼ି ବେଶି ନାହିଁ, ଭଲ ଜମି ଦୁଇ ମାଣ ହେମର ବିବାହବେଳେ ବିକି କରିଥିଲେ । ଆଉ ଯାହା ପଡ଼ିଆ ଟିପ ହୋଇ ରହିଛି, ତାକୁ ନେବ କିଏ ? ମହାଜନ କରିବା ଛଡ଼ା ଉପାୟ କଣ ?

ମନ୍ତ୍ରୀଙ୍କ ମତର ମୂଲ୍ୟ କିଛି ନାହିଁ । ସେ ଚାହାନ୍ତି ବୀଣାର ବାହା ଘରଟା ଜାକଜମକରେ, ଯେପରି ହେମର ବାହାଘର ଅପେକ୍ଷା କୌଣସି ଅଂଶରେ ଊଣା ନ ହେଉ । ତାଙ୍କ ଇଚ୍ଛା ଏଡ଼ିବାକୁ ଧନେଶ୍ୱର ବାବୁଙ୍କର ଶକ୍ତି କାହିଁ ?

ବାହାଘର ହେଲା—ହୃଷୀ ସଙ୍ଗେ ବୀଣାର । ଦିନ ପରେ ଦିନ ଯାଏ । ମୁଚୁକୁନ୍ଦ ତାର ଫୁଲର ଉପହାର ଘେନି ବର୍ଷକୁ ବର୍ଷ ହେମ ଓ ବୀଣାଙ୍କୁ ସନ୍ଧୋଳିବାକୁ ଆସେ, କିନ୍ତୁ କାହାକୁ ପାଏ ନାହିଁ ।

ଏଣେ ଧନୀ ସାହୁ ମହାଜନ ହୃଦୟରେ ଅନଳର ତେଜ ତାଳେ ତାଳେ ନାଚି ଉଠୁଥାଏ—କେଉଁ ଦିନ ନାଲିସ୍ କରି ଧନେଶ୍ୱରଙ୍କ ଘର ଖଣ୍ଡିକ ନେବ ।

( ୩ )

ହୃଷୀ ବାବୁଙ୍କର ପୈତୃକ ଘଡ଼ିଟା ଅନେକ ଦିନରୁ ଖରାପ ହୋଇ ଯାଇଛି । ବି. ଏ. ପାସ ପରେ ଚାକିରି ଜୁଟି ନାହିଁ ।

ଟିଳ୍ପସ୍ୱନ ବ ନିଯ୍ବମିତ ନୁହେଁ । ସୀଣାପାଇଁ ବାସନା ସାବୁନ ଖଣ୍ଡେ ବ ମନଲାଖି ଯୋଗାଇବା କଷ୍ଟ । ଏତେ ଅଭାବ, ସେଥିରେ ଏତେ ଦାମିକା ଘଣ୍ଟା ସଜାଡ଼ିବାକୁ ଧନ କାହିଁ ?

ଶ୍ୱଶୁରଙ୍କର ମହାଜନ ସଙ୍ଗେ ମକଦ୍ଦମା ଲାଗିଛି—ତାଙ୍କର ଘରବାଡ଼ି ଯିବା ଉପରେ । ଏ ଦାରୁଣ ସମ୍ବାଦ ଶୁଣିଲା ପରେ ସୀଣାର ତନ୍ତ୍ରୀ ଆଉ ବାଜେ ନା—ଯଦି କେବେ ବାଜେ, ସେ ଧ୍ୱନି ବିସମ୍ବାଦ ।

( ୪ )

ମାଧବ ଦିନେ ଖବରକାଗଜ ଖୋଲି ଖୋଲି ଦେଖିଲା—ଗୃହଶିଳ୍ପର ପୁନରୁଦ୍ଧାର ଲାଗି ଆନ୍ଦୋଳନ ପୁଣି 'ସୁରୁ' ହେଉଛି—ଶିକ୍ଷିତ ଅକର୍ମା ସମସ୍ୟାର ସମାଧାନ ଏଥିରେ ସମ୍ଭବ ହେବ । ସେଥିପାଇଁ କେତେକ ଉତ୍ସାହୀ କର୍ମୀ ଓଡ଼ିଶାରେ ସମ୍ମୁଖାଦେଶ ଭକାସ ବାବୁଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ନୂଆ ଦଳ ଗଢ଼ୁଛନ୍ତି । ସେମାନଙ୍କ ନାମ ପ୍ରକାଶ ପାଇଛି । ତାର ପୂର୍ବ ବନ୍ଧୁ ହୃଷୀକେଶ ପଟ୍ଟନାୟକ ସେଥିମଧ୍ୟରୁ ଜଣେ ।

ଭାବି ଭାବି ଅଉ କୂଅଟେ ସ୍ୱାହା ପାଇଲା ନାହିଁ । ଦେଶର ଭବିଷ୍ୟତ ତାକୁ ଅନ୍ଧକାରମୟ ଦେଖା ଗଲା । କଥା ଓ କାର୍ଯ୍ୟ ମଧ୍ୟରେ ଏତେ ପ୍ରଭେଦ । "ଏମାନେ ଶିକ୍ଷିତ ବାକ୍‌ପଟୁ ସଂସ୍କାରକ, ନା ସ୍ୱାର୍ଥାନ୍ୱେଷୀ ଗୁଣ୍ଡା ।"

ଶ୍ରୀ ରାମକୃଷ୍ଣ ନନ୍ଦ, ବି. ଏ.

# ଭ୍ରାନ୍ତି

ସେ ଦିନ ପଡୁଥାଏ ଖୁବ୍ କନକନିଆ ଶୀତ । ଆଉ ତା ସଙ୍ଗେ ସଙ୍ଗେ ମଧ୍ୟ ହେଉଥାଏ ବର୍ଷା ।

ହାଡ଼ଭଙ୍ଗା ଶୀତଆ ପବନ ଆଉ ବର୍ଷା ଭିତର ଦେଇ ଜନତା ଠେଲି ଚାଲିଛି ଗୋଟିଏ ଭିଖାରୀ । ଦେହରେ ଖଣ୍ଡିଏ ଛିଣ୍ଡା କୁରୁତା । ଉଦ୍ଦେଶ୍ୟ, କେଉଁଠି ଟିକିଏ ମୁଣ୍ଡଟା ଗୁଞ୍ଜିଦେବ ।

ଧନୀ ଲୋକମାନଙ୍କର ଗାଡ଼ିର କବାଟ ଖୋଲି ଆଉ ବନ୍ଦ କରି ସେଦିନ ଯାହା ରୋଜଗାର କରିଛନ୍ତି, ସେତକ ପକେଟ ଭିତରେ ହାତରେ ମୁଠେଇ ଧରିଛନ୍ତି ।

ହାତ ତାର ଏତେ ଢୋଲ ମାରି ଯାଉଛନ୍ତି ଯେ, ପକେଟ ଭିତରୁ ଫୁଙ୍ଗୁଳା ହାତ ଦିଟା କାଢ଼ିବାକୁ ତାର ମୋଟେ ଇଚ୍ଛା ହେଉ ନାହିଁ ।

ତାର ଗୋଟାଏ କଡ଼ପଟୁ ପବନ ସାଙ୍ଗେ ବରଫ ଗୁଡ଼ା ଆସି ତା ଦାଢ଼ିରେ ଲାଗି ଯାଉଛି କମ୍ପା ବେକ ପାଖରେ ଲାଗି ମିଳେଇ ଯାଉଛି । କିନ୍ତୁ ସେଥିପ୍ରତି ଭିଖାରୀର ଭ୍ରୂକ୍ଷେପ ନାହିଁ । ସେତେବେଳେ ସେ ଏକ ସ୍ୱପ୍ନମୟ ରାଜ୍ୟରେ ନିଜକୁ ହଜେଇ ଦେଇଥିଲା ।

"ଆଃ, ଘଣ୍ଟାଏ ଲାଗି ମୁଁ ଖୁବ୍ ଗୋଟାଏ ବଡ଼ ଧନୀ ହୋଇ ପାରନ୍ତି କି ! ତାହା ହେଲେ ଆଉ ଗୋଟାଏ ଗାଡ଼ି…"

ସେ ଟିକିଏ ଛିଡ଼ା ହେଲା, ମୁହୂର୍ତ୍ତକ ପାଇଁ କଅଣ ଭାବିଲା, ତା ପରେ ମୁଣ୍ଡ ହଲାଇ ନିଜକୁ ନିଜେ ପଚାରିଲା—

"ତା ପରେ ଆଉ କଅଣ …?"

ନାନାପ୍ରକାର ବିଳାସର ସ୍ୱପ୍ନମୂର୍ତ୍ତି ତାର ମାନସ-ପଟରେ ଖେଳିଗଲା ଖୁବ୍ କମ ସମୟ ଭିତରେ । କିନ୍ତୁ କୌଣସିଥିରେ ତାର ମନ ମାନିଲା ନାହିଁ, ଖାଲି ମୁଣ୍ଡ ହଲେଇଲା—

"ନାଃ, ତାହା ହେବା ଅସମ୍ଭବ… । ତାହା ହେଲେ କଅଣ ମୁହୂର୍ତ୍ତକ ପାଇଁ ପ୍ରକୃତ ସୁଖ ମିଳିବା ଏକାନ୍ତ ଅସମ୍ଭବ…।"

ଏହିପରି ଗୁଡ଼ାଏ ଏଣୁ ତେଣୁ ଭାବି ଭାବି ରାସ୍ତାରେ ଚାଲିଥିବା ସମୟରେ ତାର ନଜର ପଡ଼ିଲା ଜଣେ ବୁଢ଼ାର ପାଖରେ ବସି ଶୀତରେ କମ୍ପୁଥିବା ଆଉ ଗୋଟିଏ ଭିଖାରୀ ଉପରେ । ସେ ହାତ ମେଲାଇ ଚିତ୍କାର କରି ଡାକୁଚି, କିନ୍ତୁ ତାର ସ୍ୱର ଏତେ ଦୁର୍ବଳ ଯେ, ରାସ୍ତାର ସେଇ ଗୋଳମାଳରେ ସେ ସ୍ୱରଟି କୁଆଡ଼େ ହଜିଯାଉଚି ।

"ମନସିପୁର (ମହାଶୟ), ମତେ କିଛି ଦୟା କର ।"

ତା ପାଖରେ ଗୋଟିଏ ଖୁବ୍ ସୁନ୍ଦର କୁକୁର ବସି ଅତି କ୍ଷୀଣ ସ୍ୱରରେ ଭୁକୁଚି, ଆଉ ମଝିରେ ମଝିରେ ଟିକିଏ ଲାଙ୍ଗୁଡ଼ ହଲାଇ ଦେଉଚି ।

ଭିଖାରୀଟି ଥକ୍କା ହୋଇ ଛିଡ଼ା ହେଲା । ନିଜ ପ୍ରଭୁର ସଦାଶାପନ୍ନ ଆଉ ଗୋଟିଏ ବ୍ୟକ୍ତିକୁ ସେଠାରେ ଠିଆ ହେବାର

ଦେଖି କୁକୁରଟି ଟିକଏ ଜୋରରେ ଭୁକିବାକୁ ଆରମ୍ଭ କଲା । ଆଉ ନିଜର ନାକଟାକୁ ନେଇ ତାର ମୁନିବର ପାଦରେ ଘଷିଲା ।

ଭିଖାରୀଟି ସେଇ କୁକୁରର ପ୍ରଭୁଟି ଅଡ଼କୁ ଏକ ଅଖିରେ ଅନାଇଁ ରହିଲା । ଦେଖିଲା ତାର ପୋଷାକ ଛିଣ୍ଡା, ହାତ ଦୁଇଟି ଥଣ୍ଡା ଲଗି ଶେଠା ପଡ଼ିଛି; ମୁହଁ ଶୁଖି ଯାଇଛି, ଆଖି ଯୋଡ଼ିକ ଖୋଲୁ ନାହିଁ ।

ଆଉ, ଗୋଟିଏ କାଗଜ ପଟା ତାର ଗଳାରେ ଝୁଲୁଛି, ସେଥିରେ ବଡ଼ ବଡ଼ ଅକ୍ଷରରେ ଲେଖା ହୋଇଛି "ଅନ୍ଧ" । ଜଣେ ଲୋକ ତା ସାମନା ଦେଇ ଯାଉଥିବାର ଅନୁଭବ କରି ପାରି ଅନ୍ଧଟି ଗୋଟିଏ କରୁଣ ଚିତ୍କାର କରି କହିଲା—

"ମହାସିୟର, ମୋତେ କିଛି ଦୟା କରନ୍ତୁ । ଏ ଗରିବ ଅନ୍ଧଟା ପ୍ରତି କିଛି ଅନୁଗ୍ରହ କରନ୍ତୁ ।"

ଭିଖାରୀଟି କାଠପରି ଠିଆ ହୋଇ ଏସବୁ ଦେଖୁଥିଲା । ଅନେକ ଲୋକ ଅନ୍ଧଟିର ସାମନା ଦେଇ ଚାଲିଗଲେ; କିନ୍ତୁ କେହି ଗୋଟିଏ ପଇସା ଦେଲେ ନାହିଁ । ସେ ଯେଉଁ ଦୁଆରି ପାଖରେ ବସିଥିଲା, ସେଇ ଦୁଆର ଭିତରୁ ଜଣେ ଧନୀ ଗୃହିଣୀ ବାହାରି ଆସି ରାସ୍ତା ଉପରେ ଅପେକ୍ଷା କରୁଥିବା ଗୋଟିଏ ଗାଡ଼ିରେ ବସି ଚାଲିଗଲା; କିନ୍ତୁ ବିଚାରି ଅନ୍ଧର ସେଇ କରୁଣ ଚିତ୍କାର ତାର କାନରେ ପ୍ରବେଶ କଲା ନାହିଁ । ଭିଖାରୀଟି ସବୁ ଦେଖିଲା । ବସ ତାର ପକେଟରୁ କିଛି ପଇସା ବାହାରି କରି ସେଇ ଅନ୍ଧଟିର ହାତରେ ଦେଲା । କୁକୁରଟି ଏହା ଦେଖି ଆନନ୍ଦରେ

ଲୁଚିବାକୁ ଲାଗିଲା । ଅନ୍ଧଟି କମ୍ପିତ ହସ୍ତରେ ସେଇ ପଇସାଟିକୁ ଗ୍ରହଣ କରି କହିଲା, "ବହୁତ୍ ଧନ୍ୟବାଦ ମନସିପୁର୍...ଭଗବାନ ଆପଣଙ୍କର ମଙ୍ଗଳ କରନ୍ତୁ ।"

ଅନ୍ଧଟି ତାକୁ 'ମନସିପୁର' ବୋଲି ସମ୍ବୋଧନ କରିବା ଶୁଣି ଭିଖାରୀଟି ତାକୁ ଉତ୍ତର ଦେବାକୁ ଯାଉଥିଲା—"ମୁଁ ମନସିପୁର୍ ନୁହେଁ ବନ୍ଧୁ......ମୁଁ ଠିକ୍ ତମରି ପରି ଆଉ ଜଣେ ହତଭାଗ୍ୟ.. "; କିନ୍ତୁ ସେ ନିଜକୁ ସମ୍ଭାଳି ନେଇ ଗରିବମାନଙ୍କ ଯେଉଁବି ଭାବରେ କୁହନ୍ତି, ସେହିପରି ଭାବରେ କହିଲା—

"ଇଏ ତ ଅତି କମ୍...ଆହା । ...ବିଗୁରି..."

"ଆପଣ ଭାରି ଦୟାଳୁ ମନସିପୁର...ଆଜି ଏତେ ଥଣ୍ଡା ପଡୁଛି ଯେ, ଏ ହତଭାଗା ଲାଗି ପକେଟରୁ ହାତ କାଢ଼ିବା ପାଇଁ ମଧ୍ୟ ଖୁବ୍ କଷ୍ଟ ହେଉଥିବ; କିନ୍ତୁ... । ଆମ୍ଭମାନଙ୍କ ଭଳି ଦୁର୍ବଳିଆ ଲୋକମାନଙ୍କ ପକ୍ଷରେ ଏ ପାଗ ଭାରି ଖରାପ· ·ଯଦି ଲୋକମାନେ କେବଳ ଏତିକି ବୁଝିଁଥାନ୍ତେ ଯେ..."

ଅନ୍ଧଟି ପ୍ରତି ଭିଖାରୀର ଏତେ ଦୟା ହେଲା ଯେ, ସେ କହି ପକାଇଲା. "ହଁ, ହଁ, ସେ କଥା ଠିକ୍ ।"

ଅନ୍ଧଟିକୁ ତାଠୁଁ ବେଶି ଦୁର୍ଦ୍ଦଶାପନ୍ନ ଦେଖି ଭିଖାରୀ ନିଜର ଅବସ୍ଥା ଏକାବେଳକେ ଭୁଲିଗଲା । ପଚାରିଲା, "ତମେ ଜଣେ ଜନ୍ମରୁ ଅନ୍ଧ ?"

"ନା...ବୟସ ହେଲାରୁ ମୋର ଏପରି ହୋଇଛି...ଡାକ୍ତର-ଖାନାରେ ମତେ ସବୁ କହିଲେ, ବୁଢ଼ା ବୟସ ଏପରି ହବାର ଏକମାତ୍ର କାରଣ... କିନ୍ତୁ ମୁଁ ତାଙ୍କଠୁଁ ଭଲ ଜାଣେ...କେବଳ ଯେ

ମୋର ବେଣି ଗୁଡ଼ାଏ ବୟସ ହୋଇଯିବାରୁ ଏପରି ହେଲା, ତା ନୁହେଁ ମୋ ଜୀବନରେ ଅନେକ ଦୁର୍ଘଟନା ଘଟି ଯାଇଛି, ମନସିୟୁର...ଅନେକ ଝଡ଼ ତୋଫାନ ମୋର ଏଇ ପିଠିଟା ଉପରେ ଦେଇ ବହି ଚାଲିଯାଇଛି । ଜୀବନଯାକ ମୁଁ ଏଇ ଆଖି ଦିଟାରୁ ଗାଲି ଲୁହର ଶ୍ରାବଣଧାରା ବୁହାଇଛି । କପର ବା ଏତେ ଅତ୍ୟାଗୁର ଏ ଅଖି ଦିଟା ମୋର ସହିଲେ ? ଶେଷକୁ...” ଆଉ କିଛି କହି ପାରିଲା ନାହିଁ । ସେଇ ନିର୍ଜୀବ ଅଖି ଦୁଇଟାରୁ ଦୁଇ ଧାର ଲୁହ ବୋହିଗଲା ।

“ତାହା ହେଲେ ତମ ଜୀବନରେ ତମେ ଅନେକ ଦୁଃଖ କଷ୍ଟ ଭୋଗ କରିଚ ?”

“ମନସିୟୁର, କଣ କହିବି ଆଉ ସେଗୁଡ଼ାକ ଗୋଟାଏ ବର୍ଷ ଭିତରେ ମୁଁ ମୋର ପତ୍ନୀକୁ ହରେଇଲି, ଝିଅକୁ ହରେଇଲି ଆଉ ହରେଇଲି ସଦ୍ୟ ଫୁଟନ୍ତ ଗୋଲାପଫୁଲ ପରି ଦୁଇଟି ବାଳକ । ଯେଉଁମାନଙ୍କୁ ମୁଁ ଭଲ ପାଉଥିଲି, ଯେଉଁମାନେ ମୋତେ ଭଲ ପାଉଥିଲେ ତାଙ୍କର ଜୀବନ ଦେଇ, ସେମାନେ ଚାଲିଗଲେ—ଆଉ ମୁଁ ଏକେ ମରୁ ମରୁ ବଞ୍ଚି ଉଠିଲି । ଭଗବାନ ସେମାନଙ୍କୁ କେଉଁ ଅଜଣା ସୁଖବୋଲା ରାଜ୍ୟକୁ...ମତେ ଦେଇଗଲେ ଏଇ ଦୁଃଖ ଓ ବୁକୁଫଟା ଯନ୍ତ୍ରଣାର ବଡ ବୋଝଟା । ମରୁ ମରୁ ତ ବଞ୍ଚି ଉଠିଲି, କିନ୍ତୁ ମୋର କାମ କରିବାକୁ ମୋଟେ ଶକ୍ତି ନ ଥିଲା ତା ପରେ ଏଇ ଦୈନ୍ୟ, ଏଇ ସଂଗହୀନତା । ମାସକରୁ ଅଧେଦିନ ମତେ ଖାଇବାକୁ କିଛି ମିଳେ ନା, ତାଛଡ଼ା ମୋର କିଛି ନ ଥିଲା—ଖାଲି ଖଣ୍ଡେ ଶୁଖିଲା ରୁଟି, ସେଥିରୁ ଅଧେ ମୋର ଏଇ ନିଃସହାୟ ଜୀବନର ଏକମାତ୍ର ସଙ୍ଗୀ ଏଇ କୁକୁରଟିର । ଆଉ ଅଧେ ମତେ

ଯେଉଁତକ ଦେଇଛନ୍ତି, ସେଥିରେ ମୋର ଅନ୍ଧ ସ୍ୱାମୀଙ୍କ ଆଜି କାଲି ଦିନଟି ବେଶ୍ ଭଲରୂପେ ଚଳିଯିବ ।"

ଭିଖାରିଟି ସବୁ ମନ ଦେଇ ଶୁଣୁଥିଲା, ଆଉ ପଇସାତକ ହାତ ମାରି ତା ପକେଟ ଭିତରେ ଗଣୁଥିଲା । ସମୁଦାୟ ତାର ହେଲା ଦଶଅଣା ଦୁ'ପଇସା । ସେତକ ଗଣି ସାରିଲା ପରେ ସେ କହିଲା, "ମୋ ସଙ୍ଗେ ତମେ ଆସ, ଏଠି ଭାରି ଥଣ୍ଡା ଲାଗୁଛି । ତମ ପେଇଁ କିଛି ଖାଇବାକୁ ଯୋଗାଡ଼ କରିଦେବି ।"

ଅନନ୍ଦ ଓ ଅତର୍କିତ ସାହାଯ୍ୟ ଗ୍ରହଣର ଲଜ୍ଜାରେ ଅନ୍ଧଟିର ମୁହଁଟି ରଙ୍ଗା ପଡ଼ିଗଲା ।

"ମନସିୟର । ଆପଣ ଭାରି ଦୟାଳୁ…"

"ଆସ…"

ନିଜର ପୋଷାକ କେତେ ପାତଳ ଆଉ କାଦୁଅର ଓଦାରେ ଥୁଡ଼ୁବୁଡ଼ୁ ହୋଇଯାଇଛି, ଏ କଥା ଜାଣିଲେ ଅନ୍ଧଟି ଜାଣିପାରିବ ସେଥିପାଇଁ ବିଶେଷ ସାବଧାନ ହୋଇ ଅନ୍ଧର ହାତଟିକୁ ଧରି ଭିଖାରିଟି ଚାଲିବାକୁ ଆରମ୍ଭ କଲା । କୁକୁରଟି ମୁଣ୍ଡ ଟେକି, କାନ ଡେରି ଆଗେ ଆଗେ ଲୋକଙ୍କ ଭିତରେ ବାଟ କାଟେଇ ଚାଲିଥାଏ, ଆଉ ଯେଉଁଠି ବେଶି ଲୋକ ଗହଳ କି ଭିଡ଼ ପଡ଼େ, ସେଠି ତା ଶିକୁଳିକୁ ଟାଣି ଧରେ । ଏହିପରି ଭାବରେ ସେମାନେ ଅନେକ ଦୂର ଗଲେ । ଶେଷରେ ଗଳି ଭିତରେ ଥିବା ଗୋଟିଏ ରେସ୍ତୁରାଁରେ (ହୋଟେଲ) ଯାଇ ପହଞ୍ଚିଲେ ।

ଭିଖାରୀଟି ଦୁଆର ଖୋଲି ଅନ୍ଧକୁ କହିଲା—"ଭିତରକୁ ଆସ ।"

ନିଅଁ ପାଖରେ ଗୋଟାଏ ଟେବୁଲ ପଡ଼ିଥିଲା । ଦୁହେଁଯାକ ଯାଇ ସେଇଠି ବସିଲେ ।

କେତେକ ମଲୁଷ୍ୟ ଚୁପ୍ ହୋଇ ବସି ତାଙ୍କର ଉଦର ପୂଜା କରିବାରେ ବ୍ୟସ୍ତ ଥିଲେ । ଅନ୍ଧ ହାତରୁ ଷିକ୍ଲାଟି ତଳେ ପକାଇ ଦେଇ ହାତ ଯୋଡ଼ିକ ନେଇ ନିଅଁ ପାଖେ ଦେଖେଇଲା । କିଛିକ୍ଷଣ ପରେ ଗୋଟିଏ ଦୀର୍ଘ ନିଃଶ୍ୱାସ ଛାଡ଼ି କହିଲା—

"ବେଶ୍ ଆରାମ ଲାଗୁଚି ମତେ ଏଠି ··"

ଭିଖାରୀଟି ରେସ୍ତୁରାଁର ବାଳକାଟିକୁ ଡାକି ତାକୁ କିଛି ସିଦ୍ଧ ମାଂସ ଆଉ ହୋଲ ଆଣିବାକୁ ଆଦେଶ ଦେଲା । ବାଳକାଟି ପଚାରିଲା, "ଆଉ ଆପଣଙ୍କ ପେଇଁ ?"

"କିଛି ଦରକାର ନାହିଁ ମୋର ।"

ମାଂସ ଆଉ ହୋଲ ଆସିଲାରୁ ସେହି ଅନ୍ଧଟି ଅତି ଆଗ୍ରହରେ ଖାଇବାକୁ ଆରମ୍ଭ କଲା ।

ଭିଖାରୀଟି ଏସବୁ ଦେଖୁଥାଏ, ଆଉ ଖଣ୍ଡିଏ ଲୁଟି ପାଦ ପାଖରେ ବସିଥିବା କୁକୁରକୁ ଛିଣ୍ଡେଇ ଛିଣ୍ଡେଇ ଦେଉଥାଏ । ଖାଇବା ସରିଯିବାରୁ ଭିଖାରୀଟି କହିଲା—

"ତୁମର କିଛି ପିଇବା ଦରକାର; ନଇଲେ ଗୋଡ଼ରେ ଦମ୍ଭ ଆସିବ ନାହିଁ ।"

ତା ପରେ ସେ ଗୃହକରକୁ ଡାକି ପଚାରିଲା, "ତମର କେତେ ହେଲା ?"

"ନ ଅଣା ଦୁ'ପଇସା ।"

ଦାମ୍ଭିକା ଛୁରେଣ୍ଟର ଦେଇ ବାଙ୍କା ଅଣ୍ଟା ସେ ସେଇ ରେସ୍ତୁରାଁ ବାଲିକା ପାଇଁ ପୁରସ୍କାର ସ୍ୱରୂପ ଟେବୁଲ୍ ଉପରେ ରଖିଦେଇ । ଦୁହେଁଯାକ ରାସ୍ତା ଉପରକୁ ଆସିଲେ ।

"ତମେ ଏଠୁଁ କେତେ ଦୂରରେ ରହ ?"

"ବର୍ତ୍ତମାନ ଅମେ କେଉଁଠି ?"

"ସେଣ୍ଟ୍‌ଲେଜାର ଟେମ୍ପସନ୍ ପାଖରେ ।"

"ଅମେ ତାହାହେଲେ ଅନେକ ଦୂର ଚାଲି ଅସିଛେ । ଏଇ ନଈ ଅର ପାଖେ ଗୋଟିଏ କୁଡ଼ିଆ ଘରେ ମୁଁ ଥାଏ ।"

"ଅଚ୍ଛା, ମୁଁ ତମ ସଙ୍ଗେ ଅଉ ଖଣ୍ଡେ ଦୂର ଯିବ ।"

ଅଳଟି ଭିଖାରୀକୁ ଧନ୍ୟବାଦ ଦେବାକୁ ଅରମ୍ଭ କରିବାରୁ ଭିଖାରୀ ତା ମୁହଁରେ ହାତ ଦେଇ କହିଲା—

"ନା···ନା·· ମତେ ଧନ୍ୟବାଦ ଦେବା ଦରକାର ନାହିଁ···

ସେ ନିଜେ ଜାଣେ ନା, କାହିଁକି ସେ ଏଥିରେ ଗୋଟାଏ ଗଭୀର ଅନନ୍ଦ ଅନୁଭବ କଲା । ଅପାର ଅନନ୍ଦ, ଯାହା କି ସେ କେବେ ସ୍ୱପ୍ନରେ ସୁଦ୍ଧା କଳ୍ପନା କରି ନ ଥିଲା । ସେ ଏକ ଅଜଣା ସ୍ୱପ୍ନମୟ ରାଜ୍ୟକୁ ଚାଲିଗଲା । ସେ ଭୁଲିଗଲା ଯେ, ସେ ନିଜେ ମଧ୍ୟ କାଲିଠାରୁ ଖାଇ ନାହିଁ ଏପର୍ଯ୍ୟନ୍ତ ଖାଲି ଉପାସରେ ଅଛି । ସେଦିନ ରାତିରେ ଶୋଇବାକୁ ଜାଗା ଟିକିଏ ମଧ୍ୟ ନାହିଁ । ସେ ତାଙ୍କ ଦୁଃଖ କଷ୍ଟ ଭୁଲିଗଲା, ଅଉ ଭୁଲିଗଲା ଯେ, ସେ ନିଜେ ମଧ୍ୟ ଜଣେ ଦୀନହୀନ ହେୟ ଭିଖାରୀ । ପ୍ରତି ମୁହୂର୍ତ୍ତରେ ସେ ଧୀର ନମ୍ରସ୍ୱରରେ ଅଳଟିକୁ ପଚାରିଲା—

"ମୁଁ କଅଣ କେଶି କୋରରେ ଗୃହ୍ଣଲି ? ତମେ କଅଣ ପାଗଳ ହୋଇଗଲଣି ?"

ବସନ୍ତ ଅବନ୍ତି ବ୍ୟସ୍ତ ହୋଇ ଉତ୍ତର ଦେଲା, "ନା, ନା, ମନସିସ୍ଵର, ମୋର କିଛି ହୋଇ ନାହିଁ । ଆପଣ ଭାବ ଦୟାଳୁ । ଜୀବନରେ ଆପଣଙ୍କର ଏହି ଦୟାର ଦାନ ମୁଁ କେବେ ହେଲେ ଶୁଝେଇ ପାରିବ ନାହିଁ ।"

ଭିଖାରୀ ହସିଲା, ଖୁବ ଆନନ୍ଦ ଅନୁଭବ କଲା ଏପରି ସମ୍ବୋଧନରେ । ଅନ୍ୟକୁ ଯେ କେତେ ବଡ଼ ବ୍ଲଲଟାଏ ପ୍ରଦାନ କରୁଛି, ସେଥିପାଇଁ ସେ ମନେ ମନେ ଗର୍ବ ଅନୁଭବ କଲା; କାରଣ ସେ ସେତେବେଳେ ମନେ କଲା ନିଜକୁ ଜଣେଟାଏ ମସ୍ତ-ବଡ ଧନୀ ଓ ଦାନୀ ।

ନଈ ଅଡ଼ୁ ବହି ଆସୁଥିବା ଥଣ୍ଡା ପବନର ସ୍ପର୍ଶ ଅନୁଭବ କରି ଅବନ୍ତି କହିଲା—

"ବର୍ତ୍ତମାନ ମୁଁ ଏକା ଯାଇପାରିବ—ତମି ଅଛ ସାଙ୍ଗରେ ।"

"ହଁ, ମୁଁ ବର୍ତ୍ତମାନ ତମଠାରୁ ବିଦାୟ ନେବି ।" ଗମ୍ଭୀର ସ୍ୱରରେ ଭିଖାରୀଟି ଉତ୍ତର କଲା ।

ଗୋଟାଏ ନୂତନ ଭାବନା ଆସି ସେତେବେଳେ ସେହି ଭିଖାରୀର ମନୋରାଜ୍ୟକୁ ଅଧିକାର କରି ବସିଲା । ସେ ଭାବୁଥିଲା, ଯେଉଁ ଅସମ୍ଭବଟା ସେ ଏକାନ୍ତ କାମନା କରୁଥିଲା, ଅଙ୍କ ଯେଉଁଟା ଥିଲା ତାର କେବଳ କଳ୍ପନାର ବସ୍ତୁ, ସେଇଟା ଆଜି ତାର ବାସ୍ତବରେ ପରିଣତ ହୋଇ ନାହିଁ କି ? ଯେଉଁ ପ୍ରକୃତ ସୁଖ

ପାଇବା ଆଶାରେ ସେ ଏତେ ଆକାଶକୁସୁମ ତୋଳୁଥିଲା, ତାହା ସର୍ବଶେଷରେ ସେ କଣ ପାଇଲା ନାହିଁ ? ଯେଉଁ ଧନ ଅଙ୍କ ମାନ ଲାଗି ସେ ଏତେ ଗୁଡ଼ାଏ ବିକଟ ସ୍ୱପ୍ନ ଦେଖୁଥିଲା, ତା ଅପେକ୍ଷା ଆଜିର ଏଇ ସୁଖର ଅନୁଭୂତିଟିକ ଢେର ବେଶି ନୁହେଁ କି ? ··ଏଇ·ବିଚରା ଅନ୍ଧଟିର ଟିକିଏ ମାତ୍ର ସନ୍ଦେହ ହୋଇ ନାହିଁ ଯେ, ସେ ତାର [illegible] ଗୋଟିଏ ଭିଖାରୀ କାନ୍ଧରେ ଭର ଦେଇ ଯାଉଛି···ଏଇଥିରୁ ସେ କ'ଣ ନିଜକୁ ଧନୀ ବୋଲି ମନେ କରି ପାରିବ ନାହିଁ ? ଆଜିର ଏପରି ସୁଖ ସେ ଆଉ କ'ଣ କେବେ ପାଇଚି ?

କିନ୍ତୁ ତାର ଏଇ ଆତ୍ମପ୍ରସାଦ ବେଶି କ୍ଷଣ ସ୍ଥାୟୀ ହୋଇ ପାରିଲା ନାହିଁ । ସେଥିରେ ବାଧା ଦେଲା ଅନ୍ଧର ସେଇ ଅନୁରୋଧ ।

"ମୁଁ ଏଥର ଯାଇପାରିବି ଯେ, ଆପଣ କାହିଁକି ଏତେ ଗୁଡ଼ାଏ କଷ୍ଟ କରି ମୋ ସାଙ୍ଗେ ଆଉ ଆସୁଛନ୍ତି ?"

ହଠାତ୍ ସେ ତା ପ୍ରକୃତ ଅବସ୍ଥା ବୁଝି ପାରିଲା । ସେ ଆଉ ଥରେ କହିଲା "ହଁ, ମୁଁ ବର୍ତ୍ତମାନ ତମକୁ ବିଦାୟ ଦେବି ।"

ସେତେବେଳକୁ ସେମାନେ ପୋଲର ମଝିରେ ଆସି ପହଞ୍ଚିଥିଲେଣି । ଭିଖାରୀ ଛିଡ଼ା ହେଲା, ଅଙ୍କ ଥରେ ପକେଟରେ ହାତ ମାରିଲା, କାଳେପଇସାଟାଏ ରହିଯାଇଥିବ ପରି ଏଇ ଆଶାରେ—କିନ୍ତୁ କିଛି ନ ଥିଲା । ଆଗ୍ରହରେ ଅନ୍ଧର ହାତଟିକୁ ନିଜର ହାତରେ ରଖିଲା ବେଳେ ଅନ୍ଧଟି କହିଲା—

"ଆଜ ଥରେ ଆପଣଙ୍କୁ ଧନ୍ୟବାଦ; ଅନେକ କଷ୍ଟ ସହିଲେ ଆଜ ମୋ ଲାଗି ମନସିଯୂର, ଦୟା କର ଆପଣଙ୍କ ନାଁଟି ମତେ କହିବେ କି ?"

"ଦରକାର ନାହିଁ । ଶୀଘ୍ର ଶୀଘ୍ର ଯାଅ, ଅନ୍ଧାର ଲାଗିବ । କେବଳ ଏତକ ଜାଣିରଖ, ମୁଁ ଜଣେ ଭାର ଦୁଃଖୀ ଲୋକ··· ବିଦାୟ···"

ସେପଟକୁ କଣ୍ଟା ଦୂର ଫେରିଗଲା, ଫେର୍ ଠିଆ ହେଲା, ଏକ ଅଣିରେ ପାଦତଳେ ବୋହିଯାଉଥିବା କଳା କଟକଟ ପାଣି ଆଡ଼କୁ ଚାହିଁ ରହିଲା ଏବଂ ଆଜ ଥରେ ବଡ଼ ପାଟିରେ କହିଲା, "ବିଦାୟ ।"

ପାଣିରେ ଗୋଟାଏ ଝୁସ୍‌କନା କଣ ପଡ଼ିଯିବାର ଶବ୍ଦ ହେଲା, ତା ପରେ "ସାହାଯ୍ୟ କର, ନଇକୂଳକୁ ଦଉଡ଼ି ଆସ" ଶବ୍ଦ··· ତା ପରେ ଆଜ ପାଟି ଶୁଣାଗଲା ନାହିଁ ।

ଲୋକମାନଙ୍କର ଧକ୍‌କା ଖାଇ ଅଙ୍କଟି ଚାଲ୍ଲାର କଲା—

"ଇଏ କାହାର ପାଟି ଶୁଭିଲା ?···କଅଣ କାହାର ହେଲା କି ?"

ଗୋଟାଏ ବଜାରବୁଲା ପିଲା ସେଇଆଡ଼େ ଦଉଡ଼ୁ ଦଉଡ଼ୁ କହିଲା, "ଗୋଟିଏ ଭିଖାରୀ ପାଣିକି ଡେଇଁ ପଡ଼ିଲା ।"

ଗୋଟିଏ ଦୀର୍ଘ ନିଶ୍ୱାସ ପକାଇ ଅଙ୍କଟି ଗୁଣୁ ଗୁଣୁ ସ୍ୱରରେ କହିଲା—

"ତାର ସେ ସାହସ ଥିଲା···ହଁ ଥିଲା ନିଶ୍ଚୟ···ତା ନ ହେଲେ ପାଣିକି ସେ ଡେଇଁ ପଡ଼ୁଥାଆନ୍ତା !"

ସେ ତା ବୁଟ୍ ଯୋଡାରେ କୁକୁରକୁ ଛୁଇଁଲା, ତା ପରେ ବାଡ଼ି ଖଣ୍ଡି ଠକ୍ ଠକ୍ କରି ବାଟ ଚାଲିବାକୁ ଆରମ୍ଭ କଲା । ସେ ଜାଣିପାରିଲା ନାହିଁ, କିଏ ପାଣିକୁ ଡେଇଁ ପଡ଼ିଲା । ସେ କେବଳ ଏତିକି ଜାଣିଲା ଯେ, ତାର ଘର ଜଣେ ଭିଖାରୀ ପାଣିକୁ ଡେଇଁ ପଡ଼ିଲା । ଏା ପାଟିରୁ ଖାଲି ଅଟପ ଅପେ ବାହାରି ପଡ଼ିଲା, "ଭଗବାନ ତାର ମଙ୍ଗଳ କରନ୍ତୁ !"

ଭିଖାରୀ ଚାଲିଗଲା ଏ ସଂସାରର ପରପାରକୁ—କେବଳ ଦେଇଗଲା ଅନ୍ଧକୁ ଗୋଟାଏ ମସ୍ତ ବଡ଼ 'ଭ୍ରାନ୍ତି' ।

( ଗୋଟିଏ ଫରାସୀ ଗଳ୍ପର ଅନୁବାଦ )

ଶ୍ରୀ ପ୍ରାଣକୃଷ୍ଣ କର

# କୃଷ୍ଣଚୂଡ଼ା

"ସଂଗ୍ରାମ" ଖବର କାଗଜର ଅଫିସ ।

ସଦାନନ୍ଦ ପ୍ରୁଫ୍ ଦେଖୁଛନ୍ତି । ଝେଡ଼େଝାଡ଼ ପୁରୁଣା କୋଠା । ଛାତ ଫାଟି ବର୍ଷା ଝରୁଛି । ଉପରର ଚଟାଣରେ ପାଣିର ସୁଅ ବହି ଚାଲିଛି । ଗୋଟାଏ ପାଖ କାନ୍ଥରେ ମାଡ଼ିଯାଇଛି ଶିଉଳିର ନେଳୀ ଆସ୍ତରଣ ।

ବାହାରେ ଅଦ୍ୟ ଆଷାଢ଼ର ଅବିରାମ ବର୍ଷାର ଧାରା ଝିଙ୍କିଏ ଜମି ଆସିଛି । କ୍ଳାନ୍ତିରେ, ଅବସାଦରେ ସଦାନନ୍ଦ କାଗଜର ପ୍ରୁଫ୍ ଟେବୁଲର ଗୋଟାଏ ପାଖକୁ ଠେଲିଦେଲେ । ପ୍ରୁଫ୍ ଦେଖି ଦେଖି, ଅଣତିରିଶ ବର୍ଷ ଭିତରେ ସେ ଉପରେ ଅସ୍ୱାଭାବିକ ଭାବରେ ନୈରାଶ୍ୟବାଦୀ ସିନିକ୍ ପାଲଟି ଯାଇଛି । ଜୀବନରେ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସବୁଠି ଖାଲି ଭୁଲ୍ ଆଉ ଭୁଲ୍, ପୁଣି ଭୁଲ୍ ।

କାଗଜ ବାହାରିବା ପାଇଁ ଅଳ୍ପ ଗୁଡ଼ିଏ ପୃଷ୍ଠା ବାକି, ଅର୍ଥାତ୍ ଷୋଳ କଲମ୍ । ଷୋଳ କଲମ୍ ପୁଣି ପୂର୍ଣ୍ଣ କରିବାକୁ ପଡ଼ିବ । କ୍ଳାନ୍ତି ଓ ବିରକ୍ତିରେ ସଦାନନ୍ଦ ପକେଟରୁ ଖଣ୍ଡେ ସିଗାରେଟ୍ କାଢ଼ି ନିଆଁ ଲଗାଇଲେ ।

ସଦାନନ୍ଦ ସବୁ । ଏକାଧାରରେ ସମ୍ପାଦକ, ପ୍ରୁଫ୍ ରିଡ଼ର ସବୁ । ଅଜ ଜଣେ ସହକର୍ମୀ ଅଛୁ । କିନ୍ତୁ ସେ ବାହାରର କଥା ବୁଝିବା ପାଇଁ ।

ସଦାନନ୍ଦ କେତେଣି କାହିଁକି ଅକାରଣରେ ପଛକୁ ଫେରି ଖୋଲି ଝରକାବାଟେ ଚାହିଁଲା, ବାହାରର ପୃଥିବୀକୁ ।

ଅନେକ ଦିନ ଧରି ସେ ଭୁଲ୍‌ରେ ଯୁଛା, କେବେ ଥରେ ହେଲେ ଏମିତି ଚାହିଁନି । କେତେଦିନ ଧରି ସେ ଜାଣେନା; କିନ୍ତୁ ଅନେକ ଦିନ ଧରି ।

ଝରକା ଦେହକୁ ଲାଗି ଗୋଟିଏ କୃଷ୍ଣଚୂଡ଼ାର ଗଛ । ସାବଜା ଗଛର ଶ୍ୟାମଳ ଶୀର୍ଷ ଲୁଚିପାଇଛି କୃଷ୍ଣଚୂଡ଼ାର ଛବିଲ ଆବରଣ ତଳେ ।

ସୁନ୍ଦର···ନା ଖାଲି ସୁନ୍ଦର କହିଲେ ଅନେକ କିଛି ଅସମ୍ପୂର୍ଣ୍ଣ ରହିଯିବ । ସୁନ୍ଦର, କୋମଳ, କାନ୍ତ, ମଧୁର ଓ କମନୀୟ କୃଷ୍ଣଚୂଡ଼ାର ସେ ରକ୍ତିମ ବିକାଶ ।

ଅଷାଢ଼ର ଆକାଶରେ କଳାହାଣ୍ଡିଆ ମେଘ ଯେପରି ମାଟି ଚୁମ୍ବିତ, ଅଜ ମେଘର କୋଳରେ କୃଷ୍ଣଚୂଡ଼ା । ବୈଷ୍ଣବ-ସାଧକର ଚିର-ଶ୍ୟାମଳ କୃଷ୍ଣ, ଚୂଡ଼ାରେ ଯେପରି ପିଞ୍ଛଚନ୍ଦ୍ର ସଦ୍ୟ ଫୁଟନ୍ତ କୃଷ୍ଣଚୂଡ଼ାର ଗୁଚ୍ଛ ।

ସିଗାରେଟ୍ ସରିଗଲା । ସଦାନନ୍ଦ ଜଳନ୍ତା ସିଗାରେଟ୍‌ଟା ଫିଙ୍ଗିଦେଲା ବାହାରକୁ ।

···ଅଟ୍ଟୁର ଷ୍ଟୋଳ କଲମ୍ ବାଙ୍ଗା ।

ସଦାନନ୍ଦ କପଟ ହିଂସ୍ର ଭାବରେ ଝରକାଟା ବନ୍ଦ କରିଦେଲା । କ୍ରୀତଦାସର ପୃଥିବୀରେ ଜୀବନମାନେ ବଞ୍ଚିବା ନୁହେଁ, କିନ୍ତୁ ଏକ ଅର୍ଥହୀନ ଜୀଇ ରହିବା । କ୍ରୀତଦାସର ଏ ପୃଥିବୀ । ଏହାର ପ୍ରତ୍ୟେକ ଅଧିବାସୀଙ୍କ ଅସ୍ଥି ମଜ୍ଜାରୁ ବଞ୍ଚିବାର ଆନନ୍ଦ ଶୋଷଣ କରିନେଇଛି ଦାସତ୍ୱ ।

ସହରତଳୀ କୁଲିବସ୍ତିର କୁଲି ଆଉ ସଦାନନ୍ଦ ଭିତରେ କଣ ବା ତଫାତ ଅଛି ? କୁଲି, କାରଖାନା ମାଲିକର କ୍ରୀତଦାସ, ଆଉ ଆଦର୍ଶବାଦୀ ସଦାନନ୍ଦ, କ୍ରୀତଦାସ ଏକ ଆଦର୍ଶର ବା ଆଦର୍ଶବାଦର ।

ବରଂ କୁଲିର ଜୀବନରେ ପୂର୍ଣ୍ଣତାର ଆସ୍ୱାଦ ଅଛି । ସପ୍ତାହରେ ମଜୁରି ମିଳିଲା ଦିନ, ଅନ୍ତତଃ ଦିନକ ଲାଗି ସୁଦ୍ଧା ପାଣିମିଶା ସରାପ ପିଇ, ସେ ଜୀବନରେ ଶାନ୍ତି ପାଏ । କିନ୍ତୁ ସଦାନନ୍ଦର ସେତକ ନାହିଁ ଯେ । ଜୀବନ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଏକ ବିରାଟ ଅତୃପ୍ତି । ଆଦର୍ଶର ପୂର୍ଣ୍ଣତା କାହିଁ ?

ଦମକାଏ ପବନରେ ଝରକାଟା ଆପେ ଆପେ ପୁଣି ଖୋଲିଗଲା ।

କ୍ରୀତଦାସର ମୁମୂର୍ଷୁ ଜୀବନ ପ୍ରତି ଜୀବନୋଚ୍ଛଳ କୃଷ୍ଣଚୂଡ଼ାର ସେଇ ରଙ୍ଗୀ ଉପହାସ ।

ଏହା ଭିତରେ ଅନେକ, ଅନେକ ବର୍ଷ ବିତିଯାଇଛି । ଦିନେ ତମସାର ଜୁଡ଼ାରେ ନିଜ ହାତରେ ସେ ପିନ୍ଧାଇଥିଲା; କୃଷ୍ଣଚୂଡ଼ାର ସ୍ତବକ । ସେ ଅନେକ ଦିନ ତଳେ, ଯେଉଁଦିନ

ତମସା ଅସିଥିଲା ନବବଧୂ ସାଜ୍‌ । ସେ ଦିନ ଏମିତି ହୁଏତ ବର୍ଷଣ କ୍ଳାନ୍ତ ଅଷାଢ଼ର ଗୋଟିଏ ଅଳସ ମଧ୍ୟାହ୍ନ ।

ଆଜି ହାତରୁ ସେ ଚପଳତା ମରିଗଲାଣି ।

ଖୋଲଟି ସ୍ତମ୍ଭ ଅଜିର ବାକି ।

ସଦାନନ୍ଦ ପୁଣି ଆସି ଟେବୁଲ୍‌ ପାଖରେ ବସି ପଡ଼ିଲା । କିନ୍ତୁ କଣ ଦେଇ ବା ସେ ପୂର୍ଣ୍ଣ କରିବ ଏ ବାକି ଖୋଲଟି ସ୍ତମ୍ଭ ? ବଜାରର ଦଲାଲି ? ଚୁଷିଆର ଜମିଦାରୀ ବୃଦ୍ଧି ? ଆମେରିକାର ମହାଜନୀ ? ଭାରତର ମାନବିକ ଦାରିଦ୍ର୍ୟ ?...ସେ ସବୁ ଲେଖିବା ପାଇଁ ସଦାନନ୍ଦର ଆଜି ଧୈର୍ଯ୍ୟ ନାହିଁ ଯେପରି ।

ଆଚ୍ଛା ଏଇ କୃଷ୍ଣଚୂଡ଼ାର କଥା ଖବର କାଗଜରେ ଲେଖି ହୁଏନା ? ଏଇ କାନ୍ତ, ଲଲିତ ରଙ୍ଗ। କୃଷ୍ଣଚୂଡ଼ା ... ଯାହାର ରକ୍ତିମ ବିଳାସରେ ଅଷାଢ଼ର ଏଇ ନୀରବ, ମେଦୁର ମଧ୍ୟାହ୍ନ ଚପଳ ହୋଇଉଠିଛି ।

ନାଁ, ସମ୍ପାଦକର ପୃଥିବୀରେ କୃଷ୍ଣଚୂଡ଼ା ଏକ ଅବାନ୍ତର ସୃଷ୍ଟି । ସମୁଦାୟ ପୃଥିବୀ ହୁଏତ ଉପହାସ କରିବ, ଖବର କାଗଜର ସ୍ତମ୍ଭରେ କୃଷ୍ଣଚୂଡ଼ାର ବର୍ଣ୍ଣନା ।

କିନ୍ତୁ ଏପରି ରାଜନୀତିର କଣ ପରିକଳ୍ପନା ହୁଏନା, ଯେଉଁଥିରେ ଜୀବନର ଅର୍ଥ ଖାଲି ବଞ୍ଚିବା ନୁହେଁ, ଲକ୍ଷ୍ୟ ଖାଲି ସାମ୍ରାଜ୍ୟ ନୁହେଁ, ଆଧିପତ୍ୟ ନୁହେଁ, କ୍ଷମତା ନୁହେଁ, ଅନ୍ୟକୁ ଶୋଷଣ କରି ଅଭିବୃଦ୍ଧି ନୁହେଁ । ଯୋଉ ଜୀବନରେ କୃଷ୍ଣଚୂଡ଼ାର ମଧ୍ୟ ସ୍ଥାନ ଅଛି ।

ସଦାନନ୍ଦ ପୁଣି ଆସି ପ୍ରଫୁଲ୍‌ବାବୁ ପାଖରେ ବସି ପଡ଼ିଲା ।

କିନ୍ତୁ ଏ ସଂକୀର୍ଣ୍ଣ କୋଣ ଭିତରେ ମନ ଆଜ ତାର ଯେମିତି ବିପ୍ଳବ କରି ଉଠିଛି । କୃଷ୍ଣଚୂଡ଼ା ସେଇ ବିପ୍ଳବର ବୈପ୍ଳବିକ ପତାକା ଉଡ଼ାଇ ଦେଇ ଯାଉଛି ବାହାରର ପୃଥିବୀରେ ।

ସଦାନନ୍ଦ ଚଉକୀ ଛାଡ଼ି ଉଠି ଆସିଲା ସମ୍ମୋହିତ ପରି । ତା' ପରେ ଅଫିସ ଛାଡ଼ି ପଳାଇ ଆସିଲା ବାହାରକୁ ।

ବାହାରେ ବର୍ଷା ବନ୍ଦ ହୋଇ ଆସିଛି । ସଦାନନ୍ଦ ଠିଆ ହେଲା ଆସି କୃଷ୍ଣଚୂଡ଼ାର ସେହି ଗଛ ତଳେ । ତଳର ସବୁଜ ଘାସ ଶେଯ ଉପରେ ପବନରେ ବିଛେଇ ହୋଇ ପଡ଼ିଛି, କୃଷ୍ଣଚୂଡ଼ାର ନାଲି ପାଖୁଡ଼ା ।

ସଦାନନ୍ଦର ଦେହର ପ୍ରତି ଧମନୀରେ ଜାଗିଉଠିଲା ଯେପରି ଅଦ୍ୟ ଯୌବନର ମୃତ ଚପଳତା । ଗଛରେ ଚଢ଼ି ଇଚ୍ଛାହେଲା ତାର ମନଭରି କୃଷ୍ଣଚୂଡ଼ା ତୋଳିବା ପାଇଁ ।

ଭିତରେ କିନ୍ତୁ, ସଦାନନ୍ଦ ଖୋଜି ପାଇଲା ନାହିଁ ସାହସ । ସଦାନନ୍ଦ, ଏ ବୟସରେ ଗଛରେ ଚଢ଼ି କୃଷ୍ଣଚୂଡ଼ା ତୋଳୁଛି— ପୃଥିବୀ ଉପହାସ କରିବ । ସଦାନନ୍ଦ ଚାରିଆଡ଼କୁ ଚାହିଁଲା । ଚାରିଆଡ଼େ ମଣିଷ । ଚାରିଆଡ଼େ ଖାଲି ଅଗଣିତ ଘୃଣ୍ୟ କୁତ୍ସିତ ଦ୍ୱିପଦ ପଶୁ ।

ଏଇ ରମେଶ ଆସୁଛି, ଆସୁଛି ନିଶ୍ଚୟ କଣ ଗୋଟାଏ ନୂଆ ଅସୁବିଧାର ଅଭିଯୋଗ ନେଇ ।

ରମେଶ କହିଲା···ପ୍ରେସ ବନ୍ଦ । ଆପଣ ଏଣେ ବୁଲୁଛନ୍ତି, କିନ୍ତୁ କାଲି କମ୍ପୋଜିଟରମାନେ କେମିତି ଦରମା ପାଇବେ କହନ୍ତୁ ତ ।

ସଦାନନ୍ଦ କହିଲା···ଜାଣେ ନା ।

ରମେଶ ପଚାରିଲା···ମାନେ ?

ସଦାନନ୍ଦ କହିଲା···ଜାଣେ ନା । ତମେ ଯାଅ ରମେଶ । ମୋତେ ଆଉ ବିବ୍ରତ କରନା ।

ରମେଶ ଅଭିଭୂତ ପରି ସେଠୁ ଚାଲି ଆସିଲା ।

କିଛି ସମୟ ପରେ ସଦାନନ୍ଦ ମଧ୍ୟ ଫେରି ଆସିଲା ।

ଗୁରୁଅଡ଼େ ମଣିଷ । ଗଛରେ ଚଢ଼ି କୃଷ୍ଣଚୂଡ଼ା ତୋଳିବା ପାଇଁ ସାହସ ହେଲା ନାହିଁ ତାର ।

ରାତି ଅନେକ ହୋଇଛି ।

ମେଘାକ୍ରାନ୍ତ ଆକାଶରେ ହୋଇଛି କୃଷ୍ଣାତିଥିର ମଳିନ, ବିଳମ୍ବିତ ଚନ୍ଦ୍ରୋଦୟ ।

ସେଇ ମଳିନ ଜ୍ୟୋତ୍ସ୍ନାରେ ଗୋଟିଏ ଫଳକ ପଡ଼ୁଛି ଅପି ସୁପ୍ତା ଉମସା ଉପରେ ।

ସଦାନନ୍ଦର ଆଖିରେ ନିଦ ନାହିଁ ଦୁଇ ଆଖିରେ ତାର କୃଷ୍ଣଚୂଡ଼ାର ରକ୍ତିମ ଚପଳତା ।

ଏଇ ସେଇ ଉମସା···ଯାହାର କବରୀରେ ସଦାନନ୍ଦ ଦିନେ ଖୋସି ଦେଇଥିଲା କୃଷ୍ଣଚୂଡ଼ାର ସ୍ତବକ ? ନା ଏ ଉମସା, ସେ ନବବଧୂ ଉମସା ନୁହେଁ, ଯାହାର କବରୀରେ ସେ ଦିନ ପୁଞ୍ଜିଭୂତ

ହୋଇ ରହିଥିଲା ଉମସାବୃତ ସୃଷ୍ଟିର ମାୟା । ସେ ଉମସା ମରିଯାଇଛି ।

ମଣିଷ ମରିଯାଏ, ଦୋଳଦନ ନିଜର ଅଲକ୍ଷିତରେ ମରି-ଯାଏ । ତା' ପରେ ଯେଉଁ ଅବଶିଷ୍ଟ ଜୀବନ ପଡ଼ିରହେ, ସେ ଖାଲି କୀତଦାସର ବୈଶିଷ୍ଟ୍ୟହୀନ ବଞ୍ଚିବା ।

ଉମସା ମରିଯାଇଛି, ସଦାନନ୍ଦ ମରିଯାଇଛି ।

ସଦାନନ୍ଦ ବାଉଣା ଗଛଡ଼ ଅତି ସନ୍ତର୍ପଣରେ ଘରୁ ବାହାରିଲା । ସେଇ କୃଷ୍ଣଚୂଡ଼ା ଗଛ ।

ସୁପ୍ତା ପୃଥିବୀର ଶଯ୍ୟା ଉପରେ କୃଷ୍ଣଚୂଡ଼ା ପେଯଣ୍ଟ ଶ୍ରମର ଦୋଳାଉଛି ।

ସଦାନନ୍ଦ ଗଛତଳେ ଯାଇ ଠିଆ ହେଲା । ଦେହରେ ଲଗାପଟ୍ଟା ଭିଡ଼ିଲା, ଗଛରେ ଚଢ଼ିବା ପାଇଁ; କିନ୍ତୁ ମନେହେଲା ତାର ସେ ଯୋମିତ ଅଥବ୍, ପଙ୍ଗୁ ହୋଇଯାଇଛି । ଦେହର ପ୍ରତି ଅଙ୍ଗ ପ୍ରତ୍ୟଙ୍ଗରୁ ଆଗର ସେ ଜୀବନ୍ତ ଚପଳତା ମରିଯାଇଛି ।

ତଥାପି ସଦାନନ୍ଦ ଗଛରେ ଚଢ଼ିବାକୁ ଆରମ୍ଭ କଲା ସମସ୍ତ ଶକ୍ତି ଓ ସାମର୍ଥ୍ୟ ପ୍ରୟୋଗ କରି ।

ହଠାତ୍ ପଛରୁ ଶୁଭିଲା······କୋନ୍ ହାୟ !

ଗୀତ ବାହ୍ନର କନେଷ୍ଟବଲ୍ । ବେକରୁ ପାଦ ପର୍ଯ୍ୟନ୍ତ ବର୍ଷାତି । ହାତରେ ଖଣ୍ଡେ ଠେଙ୍ଗା । ଓଠରେ ଖଣ୍ଡେ ବିଡ଼ି ।

ସଦାନନ୍ଦ ଗଛରୁ ଖସି ଆସିଲା ।

କନେଷ୍ଟବଲ୍ ଟର୍ଚ୍ଚ ମାରିଲା ସଦାନନ୍ଦ ଉପରକୁ ।

"…ଓ ଅପଣ ! ଏତେ ରାତରେ ?"

ସଦାନନ୍ଦ ଅପ୍ରସ୍ତୁତ ହୋଇ କହିଲା…"ନା—ଏମିତ—କିଛି ନୁହେଁ !"

କନେଷ୍ଟବଲ ଆଉ କିଛି କହିବା ଆଗରୁ ସଦାନନ୍ଦ ଦ୍ରୁତପଦରେ ସେଠୁ ଚାଲିଆସିଲା ।

ମନେହେଲା ତାର ଏ ପୃଥିବୀ ମରିଯାଇଛି । ସଦାନନ୍ଦ ମରିଯାଇଛି । କୃଷ୍ଣଚୂଡ଼ା କେବଳ ସେଇ ଏକଦା-ଛବିଳ ଜୀବନର ଅମ୍ଳାନ ସ୍ମାରକୀ ।

ଶ୍ରୀ ସୁରେନ୍ଦ୍ର ମହାନ୍ତି

## ଦୋକାନଦାର

ଦନ୍ ଦନ୍, ପ୍ରତ୍ଦନ୍, ଶହ ଶହ ଲୋକ ଆସନ୍ତି, ସମସ୍ତଙ୍କୁ ସେ 'ଜି, ହଜୁର୍ କରେ ।' 'ଅଇଏ,ଫର୍ମାଇଏ' କହି ସମସ୍ତଙ୍କୁ ଡାକି ବସାଏ । ସମସ୍ତଙ୍କ ମନ ଜାଣି କଥାକହେ । ନିଜର ଗୀତଟିଏ ଗାଏ । ନିଜର ଦୁଃଖ ସେ କେବେ ଗୋଟା କହେ ନାହିଁ । ତା' ଦୋକାନରୁ ନବାବ ବାଦ୍‌ସା, ରାଜା ମହାରାଜା, ସାହେବ୍ ସୁବା, ବହୁତ ବଡ଼ ବଡ଼ ବଇସ୍ ଆଦ୍‌ମି ସଉଦା ନିଅନ୍ତି । କେତେ ଲାଟ ବେଲାଟ ହାକିମ ହୁକୁମାଙ୍କଠାରୁ ସେ ଇନାମ ଏକରାମ ପାଇଛି । ନୂଆ ଗହକି ଦେଖିଲେ ଆଗ ସେ ଏସବୁର ଗୋଟାଏ ତର୍ଜମା କରି ପକାଏ । ଭାରି ଲମ୍ବା ଚଉଡ଼ା କଥା କହେ । କିନ୍ତୁ ଠକାଏ ନାହିଁ ।

ଠକିବା ସେ ଜାଣି ନାହିଁ । ଆଜିକି ଦଶବର୍ଷ ହେବ ସେ ଏଠି ଦୋକାନ ଦେଲଣି । ସହରର କେହି ଗୋଟିଏ ଲୋକ ପାଇବ ନାହିଁ, ଯେ କହିବ ଯେ ଅମୁକ ଦୋକାନୀଟା ଠକ । ପହିଲୁ ଆସି ସେ ସଡ଼କ ପାଖ ବରଗଛ ମୂଳରେ ତିନି-ଗୋଟା କିରାସିନି ବାକ୍‌ସ ପକାଇ ଦେଇ ତା ଉପରେ ବଦର କେନଭେସ୍ ଜୋତା ପକାଇ ବିକୁଥିଲା । ଆଜି ସେ ହଜାରହଜାର ଟଙ୍କାର ଦୋକାନ କରିଛି । ବାଟା, ଫ୍ଲେକ୍‌ସ, ପଞ୍ଜାବ, ଢ଼କ୍କୁଳ ସବୁ .

ଟେଟନେସ୍ୱର ଯୋଗା ତା ପାଖେ ମହଜୁତ । ସହରର ଖୁବ୍ ବଡ଼ ବଡ଼ ଲୋକଙ୍କଠାରୁ ଆରମ୍ଭ କରି ବାଟଗଙ୍କ ଲୋକ ପର୍ଯ୍ୟନ୍ତ ତାରି ପାଖରୁ ଯୌତା ନିଅନ୍ତି । ସେ ଅଞ୍ଚଳ ଜଣେ ଧନୀ, ବଡ଼ ବ୍ୟବସାୟୀ ।

ଇମାନ୍ ଅଜ ଜବାନ୍ ଏଇ ଦୁଇଟା କଥାକୁ ଜଗି, ଫକୀର ଥିଲି, ଆଜି ସେ ଅମିର ହୋଇଛି ବୋଲି କହେ ।

ଈଶ୍ୱରଙ୍କ ଉପରେ ତାର ଅଟଳ ବିଶ୍ୱାସ, ଖୋଦା ମେହର-ବାନ୍‌ଙ୍କ କୃପା ନ ହେଲେ ଦୂବ ଘାସ ବି ଗଜାଏ ନାହିଁ । ଭଲ କାମଟିଏ ଯେ ଯାହା କରିବାକୁ ଯାଏ, ସେ ଶୁଣିଲେ ସଙ୍ଗେ ସଙ୍ଗେ କହେ, 'ଇନ୍‌ଶାଲ୍ଲା ହୋଯାଏଗା' । କେହି କିଛି ଅମଙ୍ଗଳ କଥା କହିଲେ କହି ପକାଏ—'ଖୁଦାନ୍ ଖାସ୍ତା ।'

ଦିନରେ ପାଞ୍ଚଥର ସେ ନମାଜ ପଢ଼େ । ଯେଉଁଠି ସେ ବସେ, ତା ଖଣ୍ଡିଏ ଦୂରକୁ ବଦନାରେ ବଦନେ ପାଣି ହରବଖତ୍ ମହଜୁଦ ଥାଏ, ନମାଜ ଆଗରୁ ଉଜୁ କରିବାପାଇଁ । ପାଖରେ ଖଣ୍ଡେ ମଖମଲର ଜାଏନାମାଜ ଗୁଡ଼ାଅ ହୋଇ ଥୁଆ ହୋଇଥାଏ—ନମାଜବେଳେ ଖୋଲିହୁଏ । ତା ଦେହରେ ତାଜମହଲ ନକ୍‌ସା । ତାଜମହଲ ଆଜିପାଏ ଯେମିତ ସେମିତ ରହିଛି, କିନ୍ତୁ ଏ ନକଲି ତାଜମହଲ ଫିକା ପଡ଼ିଗଲାଣି – ଅନେକ ଦିନରୁ କାରବାର ହେଇ । ହେଲେ କ'ଣ ହେଲା, ବୁଢ଼ାର ମନ କିନ୍ତୁ ଫିକା ପଡ଼ି ନାହିଁ । ତାର ନମାଜ, ତାର ଅଦା ସତେ ଯେପରି ଖୁଦାଙ୍କର ଆସନ ଟଳାଇ ଦିଏ । ସେ ଖୁବ୍ ଧୀର ପାଟିରେ ପଢ଼େ,—'ଲା—ଇଲ୍‌ହା-ଇଲ୍ ଇଲ୍ଲା-ମହମଦୁର ରସୁଲଲ୍ଲା'—କିନ୍ତୁ ତାହା ଏଡ଼େ ଗମ୍ଭୀର, ଏଡ଼େ ମଧୁର, ଏଡ଼େ ପ୍ରାଣସ୍ପର୍ଶୀ ଯେ, ମନେ ହୁଏ ସତେ

ଯେପରି ଅଲ୍ଲାଙ୍କୁ ସେ ଦେଖି ପାରୁଛନ୍ତି । ବୁଢ଼ା ଯେଉଁଦିନ ସକାଳୁ ଯାଇ ମସ୍‌ଜିଦ୍‌ରେ ମୁଅଜ୍ଜିନ ଡାକେ, ସେ ଦିନ ସମସ୍ତଙ୍କ ନିଦ ଭାଙ୍ଗିଯାଏ—ସମସ୍ତଙ୍କ ହୃଦୟରେ ସେ ସ୍ୱର ବାଜେ । ସମସ୍ତେ କ୍ଷଣକପାଇଁ ଖୋଦାଙ୍କର ଅସ୍ତିତ୍ୱ—କେବଳ ମାତ୍ର ସେହି ଖୋଦାଙ୍କର ଅସ୍ତିତ୍ୱ ଉପଲବ୍ଧି କରନ୍ତି । ସେଥିପାଇଁ କେହି କେହି କହନ୍ତି—ବୁଢ଼ା ପୀରଫୁଲ୍ ଯୈସେ ଆଦ୍‌ମି ହୈ ।

ବୁଢ଼ାର ଯୋଡ଼ା ଦୋକାନ । ହେଲେ ଝ'ଣ ହେବ ଯେ, ବଡ଼ ପରିଷ୍କାର । ମିହି ନୟନ ସୁଖ୍ ଚୁଡ଼ିଦାର ପାଇଜାମା ଆଉ ଖଣ୍ଡେ ଢିଲା ପଞ୍ଜାବୀ ବୁଢ଼ାର ପରିଧାନ । ଏତାରକମର, ସବୁଦିନେ ସବୁ ସମୟରେ । ଦାଢ଼ିଗୁଡ଼ିକ ମେହେନ୍ଦୀରେ ରଙ୍ଗା । ଆଖିରେ ସୁରମା । ବୁଢ଼ା ଖୁବ୍ ସଜ୍ଜିକରେ ଥାଏ । ଗଲ୍‌ଜଦେଖିଲୁ ସଫା ନ ରଖିଲେ ଖୁଦା ନାରାଜ ହେବେ ବୋଲି ତାର ସ୍ଥିର ଡର ।

ସେ ଏ ଦେଶର ମୁସଲମାନ ନୁହେଁ । ସେ ଆସିଥିଲା ପଶ୍ଚିମରୁ । ସେ ଯେତେବେଳେ ପହିଲି ଆସିଲା ଏ ଦେଶକୁ, ଦେଖିଲା ଲୋକେ କହନ୍ତି, ତା ଦେହରେ ଝାଙ୍କ ମାରିଦେଲେ ପିମିତ ରକ୍ତ ଖସି ପଡ଼ିବ । ସେତେବେଳେ ସେ ଜବାନ୍ ଥିଲା । ସେ ଦେହର ଅଧେ ବି ନାହିଁ ଆଜି । କିନ୍ତୁ ମୁହଁରେ ସେହି ତେଜ । ସେହି ପାଞ୍ଚଅଙ୍ଗୁଳି ଚଉଡ଼ା କପାଳ, ତୀଖ ପରି ନାକ, ଜଳା ଜଳା ଆଖି—ଯିଏ ଦେଖେ ବୁଢ଼ାକୁ ଭକ୍ତି କରେ ।

ବୁଢ଼ାର ବୟସ ୭୦ ଉପରେ ହେବ । କିନ୍ତୁ ୫ ବର୍ଷର ଛୁଆ-ଠାରୁ ବି ସେ ବେଖାତର କରି ପଦେ କେବେ କହି ନ ଥିବ ।

ଏଥିପାଇଁ ବୁଢ଼ାକୁ ସମସ୍ତେ ଭଲ ପାନ୍ତି । ବୁଢ଼ାର କେହ୍ନ ଦୁସମନ୍ ଏ ଦୁନିଅରେ ଅଛନ୍ତି ବୋଲି କେହି କହିପାରିବ ନାହିଁ ।

ବୁଢ଼ା କିନ୍ତୁ ଏକା ଏ ଦେଶରେ ସେ ହିନ୍ଦୁ ମୁସଲମାନି ଘେଟ ବଡ଼ କେତେ ଲୋକ ପାଖରେ ରହିଲାଣି, ଗୃହର କରି ନୁହେଁ ଅଦର କରି, ନିଜର କରି, ଦୋକାନରେ ଟିକିଏ ମଦଦ ଦେବା ଲାଗି, କିନ୍ତୁ ଗୋଟିଏ ହେଲେ କାହାକୁ ସେ ଏଡ଼ିବାକୁ ଯାଇ ନାହିଁ । ଜଣେ ହେଲେ କେହି ତାର ସ୍ନେହର ମର୍ଯ୍ୟାଦା ଭୁଟି ନାହିଁ । ତା ଜୀବନରେ ଯଦି ଦୁଃଖ କିଛି ଥାଏ, ତେବେ ସେତିକି । ଏକଥା ସେ ଅନେକ ଲୋକଙ୍କୁ ଅନେକ ବାର କହିଛି ।

ବୁଢ଼ା କିନ୍ତୁ କାହିଁକି ଯେ ଏ ବୟସରେ ଏକାକୀ ଏଇ ବିଦେଶରେ ପଡ଼ିଛି, ଏକଥା କେହି ଆଜି ଯାଏ ଜାଣେ ନାହିଁ । ପଚାରିଲେ ବି ବୁଢ଼ା କହେନାହିଁ—ଖାଲି ହସେ ।

ବୁଢ଼ାର ଦିନ ଏମିତି ଚାଲିଯାଏ—ଗୋଟାଏ କାସମରେ । ବୁଢ଼ା ନିର୍ଭୀକ, ନୀରବ କର୍ମୀ ଭଳି ଜୀବନର ଦିନ ଗୁଡ଼ିକ ଗୋଟିଏ ଗୋଟିଏ କରି ଅତୀତ ଗର୍ଭରେ ନିକ୍ଷେପ କରି ଚାଲିଥାଏ । ବୁଢ଼ାର ଚିନ୍ତା ନାହିଁ—ଦୁଃଖ ନାହିଁ, ଭବିଷ୍ୟତରେ କୌଣସି ଆକାଂକ୍ଷା ମଧ୍ୟ ନାହିଁ, ନିର୍ବିକାର ।

ଦିନ୍ ଦିନ୍ ପ୍ରତିଦିନ୍ କେତେ ଖରିଦ୍‌ଦାର ଆସନ୍ତି, ଯାଆନ୍ତି । ବୁଢ଼ା ସମସ୍ତଙ୍କୁ ଆଦର୍ କରେ ତାକେ—ନିଜର ତାରଫ୍ କରେ । ସବୁ ଯେମିତି ଗୋଟାଏ ଗତି—ଗୋଟାଏ ଅଭ୍ୟାସ ।

ଦିନ୍ ଦିନ୍—ପ୍ରତିଦିନ୍ ସେହି ନୂଆ ପୁରୁଣା କେତେ ଖରିଦ୍-ଦାର ଟେଦଖେ—ଯିବା ଆସିବା ସାଙ୍ଗେ ସାଙ୍ଗେ ତାଙ୍କୁ ପାଶୋରି ପକାଏ ।

କଏ କାଏ, କଏ ନାପସନ୍ଦ କରି ଫେରିକି ଦଏ—ସେଥିପାଇଁ ସେ ଖୁସି ହୁଏ ନାହିଁ କି ରାଗ କରେନାହିଁ । କାରଣ ତାର ବିଶ୍ୱାସ; ଖୁଦା ଯେଉଁ ଦିନ ଯେତିକି ଦେବେ, ତାଠାରୁ ବେଶି ମିଳିବା ହାରାମ ।

ଦିନ୍ ଢେରେ ଖରିଦ୍‌ଦାର, ବୁଢ଼ା, ଛୁଆ, ମିଣିପେ, ମାଇପେ ଅସନ୍ତି ଯାଆନ୍ତି, ତାର ସୁମାରି ସେ ରଖେ ନାହିଁ । ତା' ଦୋକାନ ଆଗରୁ ଅନାଇଁ ଅନାଇଁ ଯେ ଯାଏ, ସେ ତାକୁ ଡାକେ—ଯୋଡା ମିଳେ, ବାବୁ ଯୋଡା ?

କିନ୍ତୁ ତାକୁ ସେ ଡାକ ନ ଥିଲା । ଘୋଡ଼ା ଗାଡ଼ିଟା ଅସି ନିହାତ ଅସ୍ୱାଭାବିକ ଭାବରେ ଯେମିତି ଖଟକିନା ରହି ଯାଇଛି, ସେମିତି ସେ ପଟ୍‌କିନା ଉଠିଁଟାଏ ମାରି ଅସି ଦୋକାନରେ ହାଜର ।

'ଯୋଡା ଅଛି ଯୋଡା ?' ସେ ପଚାରିଲା ।

ବସନ୍ତର ଗୁଲ୍ ଅବ୍ ବ ନୁହେଁ,—ଫୁଲ ବାଗର ବୁଲ ବୁଲ ବି ନୁହେଁ—ଅଧିଫିଅଲା ଟଲ ଟଲ ସବାବ ବି ନୁହେଁ—ଅଉ କ'ଣ ସେ ?

ଅସମାନ୍‌ର ଗୁଡ ବି ନୁହେଁ,—ମମତାଜ ବେଗମ ବି ନୁହେଁ—ଗୋଟିଏ ଦଶବର୍ଷ ବୟସର ଚପଳା ବାଳିକା ।

"ଯୋଡା ଅଛି ଯୋଡା ? ମୋ ଗୋଡ଼କୁ ହବ ଏକା—ଠିକ୍ ନଭ ଅମ୍ମା ଯୋଡା ଭଳି—ଭେଲଭେଟ୍—ଜରିଦିଆ—ଅଛି ?"

ବୁଢ଼ା ଗୁହିଁ ରହୁଥାଏ । ସେଇମିତି ଗୁହିଁ ରହୁଥାଏ—ସେ କହି ପିଲାରେ ଲଗିଥାଏ ।

ଟିକେଟେବେଳେ ବୁଢ଼ା କହିଲା,—ହେଁ ।

'କାହିଁ ଦେଖେଁ', କହି ସେ ଅଥୟ ହୋଇ ପଡ଼ିଲା । ଖୁସିରେ ସେ ଯେମିତ ତଳେ ଲୋଟି ହୋଇଯିବ ।

'ଏଇଠି ଅଛୁ ? ସେଇଠି ଅଛୁ ?—ନା ସେ କୋଣ ଅଲମାରିରେ ଅଛୁ କି ?' ପଚାରି ଗ୍ଲାଲିଗଲା ସେ ହଜାରେ ପ୍ରଶ୍ନ ମୁହୂର୍ତ୍ତକରେ ।

ବସ, ମୁଁ ଅଣି ଦେଉଛି । ବୁଢ଼ା କହି ଉଠିଲା ।

"ଅରେ ଅରେ ବୁଢ଼ାଟା ମୋ ଗୋଡ଼ ଧରୁଛି—ଅରେ ଅରେ ପାପ ହେବ । ନାଇଁ,—ନାଇଁ,—ଥାଉ ମୁଁ ନିଜେ କରୁ ଭରନେବି ।"

"ନାଇଁ ମା, ଟିକେ ଗୋଡ଼ ଦେଖାଅ, ମୁଁ ପିନ୍ଧାଇ ଦିଏଁ । ହେଲା କି ନ ହେଲା ଦେଖିନିଏଁ । ତା ପରେ ଯାଇଁ—"

'ନା—ନା—ସେ କଥା ହବ ନାହିଁ—କେବେ ହବ ନାହିଁ—ମୋର ପାପ ହେବ ଠାକୁର ରାଗିବେ—ମା ମାରିବ ନାଇଁ, ତମେ ମୋ ଗୋଡ଼ ଛୁଅ ନାହିଁ ।'

'ନା ମା, ଠାକୁରେ ରାଗିବେ ନାହିଁ । ମୁଁ ଠାକୁରଙ୍କୁ କହିବି —ତାଙ୍କ ପାଖରେ ତମର ହୋଇ ମାଫି ମାଗିବି । ଦେଖାଅ, ପାଦ ଦେଖାଅ ମୁଁ ପିନ୍ଧାଇ ଦିଏଁ ।'

'ହୁଁ ଖାଲି କହିବ, ମିଛ କହୁଛ । ତମ ଠାକୁର ତ ଉନେ ଅମ ଠାକୁର ଅଟ ତମ ପଠାଣଙ୍କ କଥା ଶୁଣିବେ ନା ?'

ବୁଢ଼ା ବାଳକାର ମୁହଁକୁ ଗ୍ଳୁହିଁ ରହିଲା । ସରଳତାର ଏପରି ପବିତ୍ର ଅଭି, ସେ ଅଉ କେବେ କେଉଁଠି ଦେଖିଥିଲା କି ନାହିଁ

ମନେ କରି ପାରିଲା ନାହିଁ । ଏଇତ ଠାକୁର—ହିନ୍ଦୁର, ମୁସଲ-ମାନର ସମସ୍ତଙ୍କର ।

'ମା, ଅଙ୍କୁଠ ହୁଅ ନାହିଁ । ପାଦ ଦେଖାଅ, ମୁଁ ପିନ୍ଧାଇ ଦିଏଁ ।'

'ନା—ନା—ନା—'

'ତା ହେଲେ ମୁଁ ଯୋତା ଦେବି ନାହିଁ ।'

ସେ ଆଉ କିଛି କହିଲା ନାହିଁ । ବୁଢ଼ା ଧୀରେ ଧୀରେ ଟିକି ଟିକି ସେ ପାଦ ଯୋଡ଼ିକ ନେଇ ନିଜ ଗ୍ଣ୍ଠ ପାଖରେ ଧରିଲା । କି ସୁନ୍ଦର ପାଦ । ଗୋଟି ଗୋଟି କରି ସେ ଦୁଇଟି ସୁକୁମାର ପାଦରେ ଯୋତା ପିନ୍ଧାଇ ଦେବାକୁ ତାକୁ କେତେ ସମୟ ଲାଗିଲା କେଜାଣି ।

ସେ ଯୋତା ତା ଗୋଡ଼କୁ ହେଲା ନାହିଁ । ବୁଢ଼ା ଆଉ ଯୋତା ଅଣିଲା । ଦୋକାନରେ ଯେତେ ଯୋତା ଥିଲା, ତା ଗୋଡ଼ ମାପରେ ସବୁ ଅଣି ଗୋଟି ଗୋଟି କରି ତା ଗୋଡ଼ରେ ପିନ୍ଧାଇଲା । କେଉଁ ଯୋତା ପିନ୍ଧିଲେ ତା ଗୋଡ଼କୁ କମିତ ମାନୁଛି, ବୁଢ଼ା ଖୁବ୍ ନିରଖି ଦେଖିଲା । ଯେଉଁ ଯୋତା ତାର ଗୋଡ଼କୁ ଠିକ୍ ହୁଏ, ସେ ଯୋତା ପସନ୍ଦକୁ ଅଟେ ନାହିଁ—ତା' ନତ ଅପାର ଯୋତା ଭଲ ହୁଏ ନାହିଁ । ଯେଉଁ ଯୋତା ପସନ୍ଦ ହୁଏ, ସେ ଯୋତା ଗୋଡ଼କୁ ଟିକିଏ କସ୍ ହୁଏ—ତାକୁ କାଟେ—ବୁଢ଼ା ସଙ୍ଗେ ସଙ୍ଗେ କାଢ଼ି ପକାଏ । ଅସ୍ତେ ଅସ୍ତେ ବୁଢ଼ା ଯେ ତାର ଦୋକାନର ସବୁ ଯୋତା ତଳେ ବିଛୁଡ଼ ଦେଇ ସାରିଲାଣି, ସେ କଥା ତାର ମନେ ନାହିଁ ।

ବହୁ କଷ୍ଟରେ ହଲେ ଯୋଡା ବାହାରିଲ, ବୁଢା ମନ ମାନିଲା । ବାଲିବାଟିର ବ ମନକୁ ପାଇଲା । ବୁଢା ତାକୁ ନିଜ ହାତରେ ପିଆଇ ଦେଲା ଟୁବ୍ ପଢନରେ । ବୁଢା ଆଗରେ ଗୁଲିବା ପାଇଁ ବୁଢା ଡେର କହିଲା । ସେ ଗୁଲିଲା । ବୁଢା ଡାହାଣାଙ୍କ ପଛ ତା ଘୋଡ଼କୁ ସେମିତ ଗୁହିଁଥାଏ ।

ଶେଷରେ 'ବସ୍ତ୍ର-ବସ୍ତ୍ର-ବସ୍ତ୍ର' ବୋଲି ତିନିଥର କହି ସେ ବୁଢା ଦେହ ଛୁଇଁ ନିଜ ମୁଣ୍ଡରେ ମାରି ଦେଇ ଝଟପଟ ଯାଇ ଗାଡ଼ିରେ ବସିଲା ।

କଚୁଆନ କହିଲା—"ବାବୁସେ ପଇସା ଲେ ଲେନା— ବଣ୍ଡେଶ୍ୱର ବାବୁ, ଯେ ହାଲହୁମେ ବରମପୁରସେ ଅସ୍ତେ ହେଁ— ଓକାଲ—ଓକାଲ—କ୍ୟା କହତେ ହେଁ—ଅଡ଼ଭୋକେଟ—ମାଲୁମ ନାହିଁ ? ନଜଦକ୍‌ମେ ହୈ ।"

"ସେଇ ଯେଉଁ ନାଲି କୋଠା । ଦେଖିଛ ? ସେଇଠିକି ଯିବ ।" ବାଳିକା କହିଦେଲା । "ଅଚ୍ଛାବାତ୍" ବୁଢା ମୁହଁରୁ ଏତକ ବାହାରିଛି, ଗାଡ଼ି ଗୁଲିଗଲା ।

ଦକ୍, ଦକ୍, ପ୍ରଭଦକ୍ ସେଇ ବାଟ ଦେଇ କେତେ ଗାଡ଼ି ଯାଏ, କେତେ ଗାଡ଼ି ଅସେ; ବୁଢା ଗୁହିଁ ରହିଥାଏ ସେ ଗାଡ଼ି କେବେ ଅସିବ । ସେ ଗାଡ଼ି ଅଜ ତା ଅଖିରେ ପଡ଼େ ନାହିଁ ।

ଗୋଟିଏ ବୁହେଁ, ଅଧେ ବୁହେଁ, କେତେ ଗାଡ଼ି ସେଇ ବାଟେ ଯାଏ । ଫଟକିନ ଅସି ତା ଦୋକାନ ଆଗରେ ଠିଆ ହୋଇ ଯାଏ, ବୁଢା ଫଟକିନ ଚମକି ପଡ଼ି ଗୁହେଁ, କିନ୍ତୁ ତା ପରେ ଫଟ୍-

କିନ୍ତୁ ଆଉ କେହି ସେ ଗାଡ଼ି ଉପରୁ ବାହାରି ଆସି ଦୋକାନରେ ହାଜର ହେଇ ପାରନ୍ତି ନାହିଁ ।

ଜଣେ ନୁହେଁ ଦୁଇଜଣ ନୁହେଁ, ଶହ ଶହ ଲୋକ ତାର ପରି କଅଁଳିଆ କଢ଼ି ଭଳି ନରମ ବାଳିକା—କୁମାରୀ ଆସି ଯୋତା ମାଗନ୍ତି, ଯୋତା କିଣନ୍ତି, କିନ୍ତୁ ତାଙ୍କୁ ସେ ଆଉ ଦେଖେ ନାହିଁ— ତା'ପରି ଆଉ 'ଏଠି ଅଛୁ, ସେଠି ଅଛୁ ?' ଏମିତି ହଜାରେ ପ୍ରଶ୍ନ ପଚାରନ୍ତି ନାହିଁ ।

ଥରେ ନୁହେଁ, ଦୁଇଥର ନୁହେଁ, ହଜାର ହଜାର ଥର ସେ ତାରି ଭଳି କେତେ ପିଲାଙ୍କ ଛୋଟ ଛୋଟ ପାଦରେ ଯୋତା ପିନ୍ଧାଇ ଥିବ—କିନ୍ତୁ ତା ପାଦ ଭଳି କୋମଳ, ତା ପାଦ ଭଳି ସୁନ୍ଦର, ତା ପାଦ ଭଳି ମୂଲ୍ୟବାନ ଆଉ ସେ ପାଇଲା ନାହିଁ ।

ଦିନେ ଗଲା, ଦୁଇ ଦିନ ଗଲା, ଚାରିଦିନ ଗଲା, ହପ୍ତାଏ ଗଲା, ପକ୍ଷେ ଗଲା, ମାସେ ବି ଗଲା—ଆଉ ସେ ଗାଡ଼ି ସେ ବାଟେ ଫେରିଲା ନାହିଁ ।

ବୁଢ଼ା ବୁଝିଥିଲା—ସେ ଯୋତାର ଦାମ୍ ନେଇ ନ ଥାନ୍ତା । କ୍ଷଣକ ପାଇଁ ଆସି ସେ ବୁଢ଼ାକୁ ଯାହା ଦେଇ ଯାଇଛି, ତାର କିମତ୍ ସାରା ଦୋକାନ ବିକିଲେ ବି ହେବ କି ନା ସନ୍ଦେହ ।

କିନ୍ତୁ ଆଜି ବୁଢ଼ା ବାହାରିଲା—ସେଇ ଯୋତାର ଦାମ୍ ଆଦାୟ କରିବାକୁ । ପଇସା ପାଇଁ ନୁହେଁ, ତାକୁ ଖାଲି ଥରେ ଦେଖିବା ପାଇଁ । କିନ୍ତୁ ସେଦିନ ସେ ପାଇଲା ନାହିଁ ।

ତହିଁ ଆରଦିନ ଗଲା । ଦୋକାନ ବନ୍ଦ କରି ବାହାରିଲା ସେ ଓକିଲ ଘର ଖୋଜିବାକୁ । ଓକିଲଙ୍କ ନାଁଟା ସେ ଜାଣିଥିଲା

କଣ କହୁଯାଉଥିଲା, ତାର ମନେ ପଡ଼ିଲା ନାହିଁ । ସେଇଁଠିକି ଯାଇ ପଚାରେ, ସେ ଓକିଲବାବୁ ଘର କେଉଁଠି ?

ଲୋକେ ବିରକ୍ତ ହୋଇ କହନ୍ତି—“କେଉଁ ଓକିଲ ବାବୁ ହୋ ? ଓକିଲବାବୁ ତ ସହରରେ ଢେର ଅଛନ୍ତି—କେଉଁ ଓକିଲବାବୁଙ୍କୁ ତମେ ଖୋଜୁଛ ?”

“ସେଇ ଯେଉଁ ଓକିଲବାବୁ, ଯାହାଙ୍କର ଏଡ଼ିକି ଝିଅଟିଏ ଅଛି—ଗୁଲାବ ଭଳି ଢୁଲ୍‌ ଢୁଲ୍‌—ବୁଲି ବୁଲି ଭଳି ମିଠା କଥା—ହରିଣଭଳି ଢଳ ଢଳ ଆଖି—ଚାନ୍ଦଭଳି ଜହ୍ନାଲୀ—ମମତାଜ ଭଳି ସୁନ୍ଦର ।”

‘ବାଃ ବାଃ’ କହି କିଏ ହସି ଦେଇ ଚାଲିଯାଏ ।

‘ବୁଢ଼ା ତ କମ୍‌ ରସିକ ନୁହେଁ’ କିଏ ବା ଏହା କହି ବୁଢ଼ାକୁ ହଇରାଣ କରିବା ପାଇଁ ଆହୁରି ଆଗକୁ ଯିବାକୁ ବାଟ କଢ଼ାଇ ଦିଏ ।

‘ବୁଢ଼ାଟା ପାଗଲ’ ବୋଲି କହି କିଏ ବା ତା ନିଜ ବାଟରେ ସିଧା ଚାଲିଯାଏ ।

ସକାଳୁ ସଞ୍ଜ ହେଲା—ବୁଢ଼ା ଖାଇ ନାହିଁ—ପିଇ ନାହିଁ—ଟିକିଏ ଥକ୍କା ବି ନେଇ ନାହିଁ—ସେମିତ ଖୋଜିବାରେ ଲାଗିଛି—“ସେ ଓକିଲବାବୁ ଘର କାହିଁ, ଯାର ଗୋଟିଏ ଝିଅ ଅଛି । ଗୁଲାବ ଭଳି ଢୁଲ୍‌ ଢୁଲ୍‌, ବୁଲି ବୁଲି ଭଳି ମିଠା କଥା, ହରିଣ ଭଳି ଢଳ ଢଳ ଆଖି, ଚାନ୍ଦ ଭଳି ଜହ୍ନାଲୀ, ମମତାଜ ଭଳି ଖୁବ୍‌ସୁରତ୍‌ ।”

ସଞ୍ଜ ହୋଇଗଲା । ସୂର୍ଯ୍ୟ ଢେର ବେଳୁ ବୁଡ଼ି ଯାଇଥିଲେ । ଅନ୍ଧାର ଖୁବ୍‌ ଜୋରରେ ମାଡ଼ି ଆସୁଥିଲା ଚାରିଆଡ଼୍‌ । ସେଇ

ଅନ୍ଧାର ଭିତରେ ସେଇ ଧନର ସେ ଝଲୁଥିବ ସେଇ ବାଟ ଦେଇ ଗୁଲି ଯାଉଥିବା ବେଳେ, ହଠାତ୍ ତାଙ୍କୁ ଶଙ୍କି ପକାଇବାରେ ତାର ସେଇ କ୍ଷୀଣ ଅସ୍ଥି ଟିକଏ ବୋଲି ଅକ୍ଷମ ହେଲ ନାହିଁ । ସେ ଚଣ୍ଡ ଘୁଞ୍ଚିଲା—'ଅରେ ବାବୁ । ଅ—ଅରେ ଶୁନୋତା ଭାଇ ଜରା ।'

'କୋନ୍ ହୈ ?' ସେ ଫେନ୍ଦପଡ଼ିଲା ।

'ଅରେ ଠହରୋ ନା ।'

'କ୍ୟା କହିଏ ।'

'ଉ ଭକୀଲ ବାବୁକା—'

'ଓ, ଓକିଲବାବୁ-ଓୟେତ୍ତ କବ୍ସେ ଘର ଚଲେ ଗୟେ ହୈ ।'

'ଘର୍ ?'

'ହାଁ, ଘର ।'

'କୈଁୟା'

'ମାଲୁମ୍ ନହିଁ ଅପ୍‌କୋ ? ଅଃ—ଚୁଃ—ଉନ୍‌କା ଦଶ ବରଷକା ଭସ୍ ଲଡ଼କା ତୋ ମରଗଇ ବାବୁ ।'

'ମରଗଇ ?'

ଲୋକମାନ୍ ଗୁଲିଗଲା । ବୁଢ଼ା ସେଠି ଠିଆ ହୋଇ ରହିଲା । ହଜାର ହଜାର ମାଇଲ୍ ଦୂରରେ ତାର ଘର ।

ତାର ଭିତରୁ ଦୌଡ଼ି ଆସି ସେ ଯେମିତ ପଚାରୁଛନ୍ତି—'ଯୋତା ଅଛି, ଯୋତା ?'

ବୁଢ଼ା ଆଖିରେ ଜଳ ଜଳ ହୋଇ ଦିଶିଗଲା । ତହିଁ ଆରଦିନ ସମସ୍ତେ ଦେଖିଲେ, ବୁଢ଼ାର ଦୋକାନ ବନ୍ଦ ।

ଦିନେ ଗଲା, ଦୁଇଦିନ ଗଲା, ଚାରିଦିନ ଗଲା, ହପ୍ତାଏ ଗଲା, ପକ୍ଷେ ଗଲା, ମାସ ମାସ ବି ଗଲା—ଦୋକାନ ବନ୍ଦ ।

ଶ୍ରୀ ନିତ୍ୟାନନ୍ଦ ମହାପାତ୍ର

## ଦଶହରା ଭେଟି

ଆଶ୍ୱିନର ନରମ ସକାଳ ।

କମ୍ର ସବୁଜ ଘାସର ଗାଲିଚା ଉପରେ ସୁନା ସୋରିଷିଆ ଖରାର ଖେଳ, ପ୍ରକାଣ୍ଡ ଈଗଲ ପକ୍ଷୀର ପକ୍ଷ ଛାୟା ଭଳି ଅକ୍ଷିଣ ଖରା ଉପରେ ଈଶାନ ବାୟୁ ବହମାନ ମେଘଖଣ୍ଡର ସାମୟିକ ସନ୍ତରଣ, ସ୍ୱଚ୍ଛ ଆକାଶ ଓ ଶ୍ୟାମ ଧରଣୀ ଭିତରେ ଅଭିନ୍ନ ଶାନ୍ତ ଭାବର ସନ୍ଦ୍ର ଆବେଶ ସୃଷ୍ଟି କରୁଛି ଏକ ମହା ବିଜନତା, ଯାହାର ଏକ କ୍ଷୀଣ ଧାରା ସୁନନ୍ଦାକୁ ବହିର୍ଜଗତଠାରୁ ବିଚ୍ଛିନ୍ନ କରାଇ କରିଅଛି କେଉଁ ରାଜପୁରୀର ଅଲକ୍ଷିତ ଜେମା,···ମଞ୍ଜରୀ··· ମଞ୍ଜନାବତୀ ।

ସୁନନ୍ଦା ମୋର ସ୍ତ୍ରୀ ।

ମୋର ଅପକ୍ୱ ବୟସରେ ତାଙ୍କ ସହିତ ମୋର ବିବାହ ହୋଇ ଯାଇଛି । ତେଣୁ ଉପଯାଚିତ ହୋଇ ତାଙ୍କଠାରୁ ଯାହା କିଛି ଭିକ୍ଷା ମୁଁ ଗୃହେଁ—ଧନୀର ସନ୍ତାନ ସେ—ତାହା ମୋର ଶୂନ୍ୟ ଥାଳରେ ସେ ଅଜାଡ଼ି ଦିଅନ୍ତି ସତ; ମାତ୍ର ସେଇ ଅଜାଡ଼ିବାରେ ତାଙ୍କର ଯେଉଁ ତଳ ପ୍ରାୟ, 'ଅହଂ' ଲକ୍ଷ ରହିଥାଏ । ତା ମୁଁ ବୁଝ

ମୁଖରେ ମରଣ ଅବଧି ସହିନେଇ ପାରନ୍ତି; କିନ୍ତୁ ପାରେ ନା, କାରଣ ମୁଁ ତାଙ୍କର ସ୍ୱାମୀ ।

ସୁନନ୍ଦା କାବ୍ୟକବିତାର ପ୍ରେୟସୀ । ମୁଁ ଖାଣ୍ଟି ବାସ୍ତବବାଦୀ । ମୋ ଆଗରେ ମୃତ୍ୟୁ,— ମୃତ୍ୟୁ ଜୀବନ,—ଜୀବନ, ମରଣ ଭିତରେ ମୁଁ ଅମୃତ ହସ୍ତର ଇଙ୍ଗିତ ଦେଖେନା କି ଜନ୍ମ ବା ସୃଷ୍ଟିରେ ମୁଁ ନୂଏନ ଅନୁଭବ ।

ଆଜି ଯେଉଁ ଅସ୍ପଷ୍ଟ ସକାଳ କଥା ମୁଁ କହୁଚି, ଠିକ୍ ସେହି ସକାଳ କୋଡ଼ିଏ ବରଷ ତଳେ ସୁନନ୍ଦାର ଶ୍ରୀ ଉପରେ ସଙ୍ଗୀତ ଡାକିଥିଲା । ସେହି ସଙ୍ଗୀତ ଆଜି ବି ମୋର ପ୍ରାଣକୁ ମଧୁଛନ୍ଦରେ ଉଥଳ କରେ, ଯେତେବେଳେ ମୁଁ ତାଙ୍କର ହାସଦୀପ୍ତ ତୃପ୍ତ ମୁଖ ଉପରେ ନେତ୍ରପାତ କରେ । ଏତେ ରୂପ । ସେ ରୂପରେ ପୁଣି ଏତେ ତନ୍ଦ୍ରା । ଏତେ ସ୍ୱପ୍ନ ।। ଏତେ ତୃଷ୍ଣା ।।।

ଅନ୍ତର୍ଯାମୀ ଜାଣନ୍ତି, ୯ଲ ମୋର ସ୍ତ୍ରୀ ସୁନନ୍ଦା ପାଇଁ ମୁଁ କଅଣ ବା ନ କରୁଛି, ନ କରନ୍ତି । କବିତା ସେ ଭଲ ପାଅନ୍ତି, ବୋଲି ତାଙ୍କ ପାଇଁ ଆଣି ଦେଇଛି ସୁନେଲି ରଙ୍ଗର ମରକ୍କୋ ଚମଡ଼ା ବନ୍ଧା ଓମର ଖୈୟାମ୍‌ର ସୁରା ଓ ସାକୀର କବିତା ବହି । ସେ ବହି ସୁନନ୍ଦା ପଢ଼ନ୍ତି, ମଦର ସ୍ରାବ ଝରିପଡ଼େ ତାଙ୍କର ଓଳମ୍ବ ଦୁଓଟି ଆଖିପତାରୁ । କାଚନଳ ଭଳି ସ୍ୱଚ୍ଛ କଣ୍ଠଦେଶରେ ତାଙ୍କର ଦୁଇଟା ନୀଳଶିରା ଉତ୍ତେଜନାର ଉତ୍ତାପରେ ଲୋହିତ ବର୍ଣ୍ଣ ଧରେ । ତା ବି ମୁଁ ଧୀର ଚକ୍ଷୁରେ ଉପଭୋଗ କରେ । ସେ ଛବି ଭଲ ପାଅନ୍ତି ବୋଲି ମୁଁ ଗ୍ରୀସୀୟ ଆର୍ଟର ଚିରନ୍ତନ କଳାକୁଞ୍ଜରୁ ତୋଳି ଆଣିଛି ରୂପଲକ୍ଷ୍ମୀ, ଭିନସ୍‌ର ଉଲଗ୍ନ ଛବି, ଟାଙ୍ଗି ଦେଇଛି ବି ତାଙ୍କର

ଶୋଇବା ଘରର କାନ୍ଥରେ । ନାଗ୍ରି ଟସ, କିନ୍ତୁ ଧନେ ହେଲେ ତ ଏଇ ରୂପସୀ ଗ୍ରୀସୀୟ ଦେବୀମୂର୍ତ୍ତିର ଅନାବୃତ ରୂପକାନ୍ତିକୁ ଦେଖି ଶିହର ଉଠି ନାହାନ୍ତି ? ସେ ଫୁଲ ଭଲ ପାନ୍ତି, ସେଥିପାଇଁ ମାଳୀକୁ ମୁଁ ହୁକୁମ ଦେଇଥାଏ ପଡ ଋତୁରେ ପ୍ରକୃତ ଯେଉଁ ଫୁଲର ସମ୍ଭାର ନେଇ ମୋର ବଗିଚାରେ ପସରା ମେଲାଏ, ତାହା ଯେପରି ସୁନନ୍ଦାର ଟେବୁଲ ଉପରେ ତାଙ୍କା ଅଳ୍ପ ଜୀବନ୍ତଭାବରେ ରହି ପାରିବ । ତେଣୁ କୃଷ୍ଣଚୂଡ଼ା, ଗୋଲାପ ରକ୍ତ କରବୀର ଥରେ ଥରେ ସୁନନ୍ଦାର ଗଭାରେ ମଣ୍ଡଣୀ ହୋଇଥିବାର ମୁଁ ଦେଖେଁ । ମୁଁ ଦିଏଁ, ଦେଇଛି, ଦେଇ ବି ଯାଉଛି, କିନ୍ତୁ ସେ କଅଣ ଦେଇ ଶିଖି ନାହାନ୍ତି ? ସେ କାହିଁକି ଦେବେ ? ଯେ ସମ୍ପୂର୍ଣ୍ଣ, ସେ ଅପୂର୍ଣ୍ଣର କଥା ଭାବିବେ କାହିଁକି ?

ଏ ବ୍ୟବଧାନକୁ ଦଳି ଦେବାପାଇଁ ଆମ ଜୀବନରେ କୌଣସି ଅଶ୍ରୟ ନ ଥିଲା । ସୁନନ୍ଦାର ଅଶ୍ରୟ, କାବ୍ୟ କବିତା, ଛବି, ବନ୍ଧୁ ସଙ୍ଗ ପୂର୍ଣ୍ଣ—ଅଳ୍ପ ମୋର ଅଶ୍ରୟ; ନିଃସଙ୍ଗ ଜୀବନରେ ଯାହା ହୋଇଥାଏ—କେବଳ ଭାବନା···ମରୁର ସୀମାହୀନ ସୀମା ଭଳି ଅସୀମ ଭାବନା ।

ସେଦିନ ବିଜୟା ଦଶମୀର ପ୍ରଭାତ ସୁନ୍ଦର ଓ ସୁଖଦ ପ୍ରଭାତ । ସୁନନ୍ଦା ସକାଳୁ ଗୁଣୁ ଗୁଣୁ ହୋଇ ତାଙ୍କର କୋଠରୀଟି ସଜାଇବାରେ ଲାଗିଛନ୍ତି । ଗତ ରାତ୍ରିର ଅଳସ ଭାବ ଧୀରେ କଟିଯାଇଛି ତାଙ୍କର ଆଖିପତାରୁ । ଶରତର ସ୍ୱର୍ଣ୍ଣ କିରଣରେ ଗବାକ୍ଷ ପଥ ହୋଇଛି ରଞ୍ଜିତ ।

ଗୃହସଜ୍ଜା ସବଶୁ । ମୁଁ ଅନ୍ୟମନସ୍କ ଭାବରେ ବସି ରହିଛି ଝାଉଁଚ ଉପରେ । ଦୂରରେ ଦଶଭୁଜା ମଣ୍ଡପ ଉପରେ ନହବତ୍‌ର ତାନ ତରଙ୍ଗାୟିତ ହୋଇ ବହିଆସୁଛି ଧୀରେ···ଅତି ଧୀରେ ।

ସୁନନ୍ଦା ସାବୁନରେ ହାତ ଧୋଇ ଧୋଇ କହିଲେ, 'ଏଇ ଯାଃ ଭୁଲିଗଲି, ତୁମ ରୁମ୍‌ଟାରେ ଟିକିଏ ହାତ ମାରି ଅଣିପାରିଲି ନାହିଁ । କିନ୍ତୁ ତୁମେ ଯେଉଁ ଛବିଗୁଡ଼ାକ ଟାଙ୍ଗିଛ । ଉଃ କି ଭୟଙ୍କର । ମତେ ବଡ଼ ଭୟ ଲାଗେ । କି ଯେ taste !'

ନହବତ୍‌ର ସୁରରେ ମୋର ପ୍ରାଣ ଯେପରି ବ୍ୟାକୁଳିତ ହୋଇ ଯାଇଥିଲା । ସୁନନ୍ଦାର କଥାରେ ମୋର ଅଭିନିବେଶ ଭାଙ୍ଗିଗଲା, କହିଲି—

ସୁନା; ମୁଁ ନିଜେ ଯେତେବେଳେ ତୁମର ରୁଚିକର ହୋଇ ପାରୁନି, ମୋର ରୁମ୍, ମୋର ଛବି, ମୋର ଚେଷ୍ଟା କିପରି ବା ତୁମର ପ୍ରିୟ ହେବ ?

'ଏଇ ରାଗିଲି ବୋଧହୁଏ' କହି ସୁନନ୍ଦା ତାଙ୍କର କୋମଳ ଭୁରୁ ନଚାଇ ମୋଆଡ଼େ ହାଣିଲେ କଟାକ୍ଷ ।

'ନା, ମୁଁ ରାଗି ନାହିଁ । ଯଦି ପାର ମହାତ୍ମାଙ୍କର ସେଇ ଗୁଇନା କ୍ଲେ ମୂର୍ତ୍ତିଟି ପେଟ୍ରୋଲ ଦେଇ ସଫା କରି ରଖ । ଗୁଡ଼ିକରୁ କହିଲେ, ଘରଟା ପରିଷ୍କାର କରିଦେବ । ଅଚ୍ଛା, କେଉଁ ଛବିଗୁଡ଼ାକ ବଡ଼ ଭୟଙ୍କର ବୋଲି କହୁଛ ସୁନ ? ଉତ୍ପଳମଣିଙ୍କର ? ବାଣରେ ଯେଉଁ ଗୋଟାଏ ବୋଲି ଲୋକ ହୃଦୟ ଫଟାଇ କରୁଣଦନ କାନ୍ଦ ପାରିଥିଲା ? ଗୌତମଙ୍କର ମାୟାମୁକ୍ତ ହୋଇ ସନ୍ନ୍ୟାସ ପାବା ? ଯାହାଙ୍କର ଅମୃତବାଣୀ ଶତ ସନ୍ତପ୍ତ ପ୍ରାଣରେ ଜରା ଓ ମୃତ୍ୟୁର

ଭୟ ଦୂର କରୁଛ ? ଗ୍ରୀନବନ୍ଧୁ ? ସାହେବ ହେଲେ ବ ସେ ମହାଭାରତୀୟ ଅଟନ୍ତି ? ପାରନେଲ ? ଭର୍ଜିନ୍ ମେରୀ ? ନାଇଟନ୍ ଗିବାଙ୍ଗ ? ଫ୍ଲୋରେନ୍ସ ନାଇଟିଙ୍ଗେଲ ? କାହାକୁ ଭୟ କରୁଛ ?

ବର୍ଷ ବର୍ଷ ଧରି ଏଇସବୁ ଛବି ମୋର ପ୍ରକୋଷ୍ଠ ଅଳଂକୃତ କରୁଛି । ସୁନନ୍ଦା ଦେଖିଛନ୍ତି, ଜାଣିଛନ୍ତି—ତଥାପି ତାଙ୍କର ଭୟ ? ପୁଣି ପଚାରିଲି—କେଉଁ ଛବିଗୁଡ଼ାକ ଭୟର କାରଣ, ମୁଁ ଏଇକ୍ଷଣି ଦୂର କରିଦେବି । ତୁମର ପରିତୃପ୍ତି ପାଇଁ ମୋର ଏତେଦିନର ଦାନବୃକ୍ଷରେ ଗୋଟିଏ ମାତ୍ର କାଠ ମୁଁ ଛାଡ଼ିଦେଇ ପାରେ ନା ।'

'ନା ଗୋ, ସେ ସବୁ ଛବି କଥା ମୁଁ କହୁନାହିଁ । ସାତ ଅଠ ଦିନ ତଳେ ଯେଉଁ ସବୁ ଛବି ଖବରକାଗଜରୁ କାଟି ବଡ଼ ବଡ଼ ପେଷ୍ଟ ବୋର୍ଡ୍‌ରେ ଲଗେଇ ରଖିଛ; ସେ କଣ ସବୁ ସତ ?'

କାବ୍ୟକବିତାମୋଦୀ ମୋର ନିଜ ଅଙ୍କଲକ୍ଷ୍ମୀ ଏଇ ବାସ୍ତବ ଚିତ୍ରଗୁଡ଼ାକ ଅଳୀକ ବୋଲି ଭାବୁଛି ? କହିଲି—'ଧାଡ଼ିନ୍ ହାତରେ ଶୁଖିଗଲାଣି, ଧୋଇ ଅସ ।' 'ହଁ, ମନେ ପଡ଼ିଲା, ଆଜି ଯେ ଦଶହରା । ମୋର କହିବ୍ୟ ନା' ଆନନ୍ଦ—ତୁମକୁ କିଛି ଉପହାର ଦେବା । ଦେବି, କିନ୍ତୁ କଅଣ ଦେବି ?'

ସୁନନ୍ଦା ଅଭିମାନିନୀ । ଏଇ କଥାଟା ସେ କଥା ପ୍ରସଙ୍ଗରେ ଉଠେଇବେ ବୋଲି 'ତୁମ ରୁମ୍‌ଟାରେ ହାତଦେଇ ପାରିଲି ନାହିଁ' ଆରମ୍ଭ କରିଥିଲେ; କିନ୍ତୁ କଥାର ସ୍ରୋତ ଧରିଲା ଭିନ୍ନ ଆକାର ।

ସୁନନ୍ଦା ଉତ୍‌ଫୁଲ୍ଲ ହୋଇ କହିଲେ—'କାହିଁକି ମନେ ପଡ଼ିବ ? ଏ ବର୍ଷ କିନ୍ତୁ ମୁଁ ଛାଡ଼ିବି ନାହିଁ । ଗୋଟିଏ ରେଡ଼ିଓ,

ଗୋଟିଏ ସେଣ୍ଟ୍ ଇଭନିଂ ଇନ୍ ପ୍ୟାରିସ୍, ଅଜ ମୋ ପାଇଁ ଜୁଇଗଣ୍ଡ ଦାମିକଥା ଶାଢ଼ୀ । ତା ପରେ ସନ୍ଧ୍ୟାରେ ନିମନ୍ତ୍ରଣ ନିଷ୍ଟସ୍ୱ । ସେଥିପାଇଁ ଲେମନ୍ କ୍ୱାଶ ଦୁଇ ବୋତଲ, ଚର୍କି ଦୁଇଟା, ବାଦାମ ପେସ୍ତା, ଅଙ୍ଗୁର ସବୁଥିରୁ ଦୁଇ ଦୁଇ ସେର, ଅଜ—'

'ଅଜ ସୁନ । ଅଚ୍ଛା କେଉଁମାନେ ନିମନ୍ତ୍ରିତ ହେବେ ?'

ସୁନ ହସି ହସି ଆରମ୍ଭ କଲେ—'ପ୍ରେମରାଜ ବାବୁଙ୍କୁ ନିମନ୍ତ୍ରଣ କରିବା, ସେ ନୂଆ ସବ୍‌ଜଜ୍ ହୋଇ ଅସିଛନ୍ତି । ତାଙ୍କ ସ୍ତ୍ରୀ ଶୃଙ୍ଗଣୀ ମୋର ପିଲାଦିନର ସାଥୀ । ଅଜ ପୁପୁ, ମିନା ତାଙ୍କର ଶ୍ରେଷ୍ଠ ପୁଅ ଓ ଝିଅ । ତା ପରେ ବଙ୍କିମ ବାବୁ ପିଲ୍ଲଡ଼ର । ଜୋସେଫ୍ ରାଜତ ଓ ତାଙ୍କ ସ୍ତ୍ରୀ ଇଭ୍ ରାଜତ । ତମେ ନିଶ୍ଚୟ ଚିହ୍ନ, ସେମାନେ ତମର ଖୁବ୍ ପ୍ରଶଂସା କରନ୍ତି । ଯୁଦ୍ଧ ସମ୍ବରେ ତୁମର ବକ୍ତୃତା ଅବିକଳ ନକଲ କରି ତାଙ୍କ କାଗଜରେ ଛପେଇଥିଲେ । ଚରଣକଙ୍କର ବାବୁ ସଦର୍ଓ ଅବିବାହିତ—'

ଏତିକିବେଳେ—'ମାଆ, ଦୁଃଖିଅ ମାଆ ଦୁଆରେ ଛିଡ଼ା ହୋଇଛନ୍ତି; ତା ପୁଅକୁ ଦୁଧ ଖୁଆଇବ, ଟିକିଏ ଚିନି ମାଗୁଛି' କହି ଗୃହର ରମ୍ଭ ସାଆନ୍ତାଣୀଙ୍କର ଅଦେଶ ଅପେକ୍ଷାରେ ରହିଲା । କଥା କହିଲାବେଳେ ସୁନନ୍ଦାଙ୍କୁ କିଏ ବାଧା ଦେଲେ ସେ ବିରକ୍ତ ହୁଅନ୍ତି । ମାଙ୍କେ ସାଙ୍ଗେ ଅଦେଶ ମିଳିଲା—'ନା ଚିନି ନାହିଁ ।' ମୁଁ ପଚାରିଲି—'ରମ୍ଭ; ତାର ପିଲାଟି କେତେ ?' ରମ୍ଭ ସନ୍ତର୍ପଣରେ ଟିକିଏ ମାଆଙ୍କୁ ଅଟକାଇ କହିଲା—'ଏଇ ମାସକର ହେବ । ବଡ଼ ଦୁଃଖୀ ବାବୁ ତାର; ଦୁଧ ଟିକିଏ ମିଳେନାଇ

ଯେ, ଗାଈ ପାଣିରେ ଚନ୍ଦା ଦେଇ ସେ କଅଁଳା ଛୁଆଟିକୁ ହାପୁଡ଼େଇ ଦିଏ । ଆପଣ ଥିଲେ ବୋଲି ଲାଜ ମାଡ଼ିଲା ତାକୁ, ସେଥିପାଇଁ ମିଛରେ କହିଲା ଦୁଧ । ମୁଁ ଜାଣେ ଛୁଆଟା ଗାଈ ପାଣି ପିଏ ।'

ଡାଉର୍ ଉପରୁ ମୁଁ ଉଠି ଛିଡ଼ା ହେଲି । ଦୁର୍ଗାମଣ୍ଡପ ଉପରୁ ନହବତ୍‌ର ଧ୍ୱନି ଭାସି ଆସୁଥାଏ । କହିଲି—'ରମ୍ଭ, ସେବେ ଚନ୍ଦା ତାକୁ ଦେ । ଆଉ ତାକୁ କହ, ତାର ପିଲା ଦୁଇବର୍ଷ ହେବାଯାଏ ନିତି ସକାଳେ ଆସି ସେବେ ଗାଈଦୁଧ ଘରୁ ନେଇ ଯାଉଥିବ । କଅଣ କହୁଛ ସୁନନ୍ଦା ? ପିଲାଟା ବଞ୍ଚି ଯାଉ' ସୁନନ୍ଦା କିଛି କହିବା ପୂର୍ବରୁ ମୁଁ କହିଗଲି—'ହଁ, ସବୁ ଜଣା ହେବ, ନିମନ୍ତ୍ରଣ ବି କରାଯିବ । କିନ୍ତୁ ଜିନିଷ ସବୁ କିଣିବାକୁ ତୁମକୁ ମୋ ସାଙ୍ଗରେ ଯିବାକୁ ହେବ ବଜାରକୁ । ମାଇପଙ୍କ ପସନ୍ଦ ଆଗରେ ଆମ ପସନ୍ଦ ପାସଙ୍ଗରେ ପଡ଼େ ? ଶୀଘ୍ର ତିଆରି ହୋଇ ଯାଅ । ଆଉ ରମ୍ଭ, ତୁ ଡ୍ରାଇଭରକୁ କହ ମଟରଟା ଗ୍ୟାରେଜରେ ରଖି ସେ ଘରକୁ ଯାଉ । ତାର ତ ପୁଣି ପିଲାପିଲି ଅଛନ୍ତି । ଆଜି ଯେ ଦଶହରା ।'

'କିନ୍ତୁ ମୁଁ ଯେ ବଜାର ଯିବି ବୋଲି କହିଲି ?'

ସୁନନ୍ଦା ବ୍ୟଥିତ ଦୃଷ୍ଟିରେ ଏତିକି କହି ମୁହଁଫେରାଇ ରହିଲେ ।

ମୁଁ ଆସ୍ତେ କହିଲି—'ଆଜିଠୁଁ ଏବେ କୁଳବଧୂ ଅସୂର୍ଯ୍ୟମ୍ପଶ୍ୟା ନ ହେଲେ କ୍ଷତି କଅଣ ? ତୁମେ ପାଦରେ ଯିବ, ଦେଖିବ,

ତୁଟିବ । ଏଥିରେ ତୁମର ଇଞ୍ଜିନିୟର ସ୍ୱାମୀ ଲାଜ ପାଇବେ ନାହିଁ । ତୁମର ଭୟ କଅଣ ?'

...

ସହରର ଛକ ଯାଗାମାନଙ୍କରେ ଜନସମାଗମ ବେଶି । ଶାରଦୀୟ ପୂଜାର ସମ୍ଭାର ନଗରର ବୁକୁ ଉପରେ ଐନ୍ଦ୍ରଜାଲିକ ଶୋଭା ରଚନା କରୁଛି । ତାହାର ଯେପରି ଅବକାଶ ନାହିଁ, ନାହିଁ ଅବସର କିମ୍ବା ଅବସାଦ । ସୁନନ୍ଦାକୁ ମୋର ପାଖେ ପାଖେ ଚଳେଇ ମୁଁ ଯାଉଛି ତାଙ୍କ ପାଇଁ ପୂଜାର ଉପହାର କିଣିଦେବା ପାଇଁ ।

ହଠାତ୍ ତାହାଙ୍କୁ ସୁନନ୍ଦା ମୋର ଦୃଷ୍ଟି ଆକର୍ଷଣ କରାଇ କହିଲେ—'ଇଃ…ଇଲୋ • କେଡ଼େ ଅସନା ପିଲାଟାଏ ମ ?' ମୁଁ ବୋଧହୁଏ ଅନ୍ୟ କଣ ଭାବୁଥିଲି । ଚୁଲ୍ ଚୁଲ୍ କହିଲି—'କେଉଁ ପିଲା ?'

'ମାଗନ୍ତାଟାଏ; ଦେଖ ମ ଦେଖ ମ… …ଝୁଞ୍ଜୁର ବାଳଗୁଡ଼ାକ କମିତ ଚୁଟି ପକାଉଛି । ଇହ ! ଇଲୋ, ମାଆ ଲୋ, ଥୁଃ ଥୁଃ । ମାଆ କି ତାର କଅଣ ଗାଡ଼ଚୁଲୀ ହେବ ଛିଡ଼ା ହୋଇଛି ତାକୁ ଅନେଇଛି ଖାଲି ବାଲ୍ ବାଲ୍ କରି । ଇହୁ… ଚୁଲ ଚୁଲ୍ ମ, ମୋ ମୁଣ୍ଡ କଅଣ ହୋଇଯାଉଛି—ଚୁଲ…।'

ସୁନନ୍ଦାର ବିସ୍ଫାରିତନେତ୍ରର ଦୃଷ୍ଟି ଯେଉଁଆଡ଼େ ତାଙ୍କୁ ଅଭିଭୂତ କରି ସ୍ଥାଣୁ ଭଳି ଛିଡ଼ା କରେଇଛି, ସେଇଆଡ଼େ ମୁଁ ଚାହିଁ ଦେଖିଲି ଯାହା ତା ମନିଷ କେବେ ସ୍ୱପ୍ନରେ ଦେଖିଲେ କମ୍

ଅଢାଳ ପାଞ୍ଚବର୍ଷର ମଣିଷ ପିଲା । ମୁଣ୍ଡଟା ହାଣ୍ଡି ଭଳି; ଉଦରଟା ଫୁଲିଛି ଅସମ୍ଭବ ଭାବରେ । ଆଖି ନାହିଁ କେବଳ ଗାଢ଼ ଦୁଇଟା; ଗୋଟାଏ ଧାର ପିମ୍ପୁଡ଼ି ସେ ଗାଢ଼ ଦଟା ଅକ୍ରମଣ କରିବାକୁ ଆଗେଇଛନ୍ତି । ହାତ ଗୋଡ଼ ଗୁଡ଼ାକ ଗୁଡ଼ାଖଣ୍ଡ କାଠିର ଅ କାଠି । ହାଡ଼ ଉପରକୁ ଚାପି ହୋଇଯାଇଛି ଚମ । ହନୁ ହାଡ଼ ଦୁଇଟା ମୁଣ୍ଡ ଖପୁରିରୁ ଅଠ ଅଙ୍ଗୁଳ ଖଣ୍ଡେ ବାହାରି ଆସିଛି । କୁକୁରଟାର ସଦ୍ୟବାନ୍ତିରୁ ଯେଉଁ କ୍ଷୀଣ ବାଷ୍ପ ବାହାରୁଛି, ତାକୁଇ ଶୁଙ୍ଘି ହତଭାଗା ବାଆଁ ହାତ ପାପୁଲିରେ ପୋଷେ ବାନ୍ତି ଧରି ଡାହାଣ ହାତର ଖଡ଼ିକା ଭଳି ଅଙ୍ଗୁଠିରେ ସେଇ ବାନ୍ତି ଭିତରୁ ଅଧପଚ୍ଚା ଚଣ୍ଡୁଳ କେତୁଟା ପାଟିକୁ ପକାଇଦେଉଛି ଟପ୍...ଟପ୍ । ତାର ବୁଭୁକ୍ଷା ଯେପରି ଅପ୍ରତିହତ ..ଗତିରେ । ତା ପରେ ପରେ ଦେଖିଲି, କୋଟାକାଟା ଭାତଦାନା ବାନ୍ତି ଭିତରୁ ଅଳ୍ପ ଘାଣ୍ଟି ନ ପାରି ଯୋପକ ଯାକ କୁକୁର ବାନ୍ତି ଚୋକଦେଲା ପାପୁଲି ଠେଲି ।

ଲୁତଟା ମୋର ଧକ୍କାଖ୍ଵାନା ହୋଇ ସ୍ପନ୍ଦନହୀନ ହୋଇଗଲା । ନିଜକୁ ସମ୍ଭାଳି ନେଇ ସ୍କ୍ରିନ୍‌ ଅନେଇଲି; ସେ ନାକରେ ପଣତ ଦେଇ ଥୁ ଥୁ କରୁଛନ୍ତି । ହତଭାଗାର ମାଅ ଅଡ଼କୁ ଚାହିଁ ଦେଖିଲି; ଏକ ହୃଦୟବିଦାରକ ଦୃଶ୍ୟ । ନର୍ଦ୍ଦମା ଉପରେ ଭାସମାନ ଖଲିଖଣ୍ଡେ । ପଢ଼ ଜଠି ଦଉଡ଼ି ଅଭାଗୀ ସେ ଖଲିଖଣ୍ଡି ଘୁଣିଅଣିଛି ପୁତିଗନ୍ଧମୟ ନର୍ଦ୍ଦମାରୁ । ବୋଧହୁଏ, ସେ ଆଶା କରିଥିଲା ବହୁତ; ଭରସା ରଖିଥିଲା ଭାଗ୍ୟ ଉପରେ । କୌଣସି ଉଷ୍ଣର ଭଳି ଖଲିଟାକୁ ସାଉଁଟି ଆଣି ମେଲେଇ ଦେଖେ ତ ସବୁ ଶୂନ୍ୟ । ତାର ଆଖି ଆଗରେ ଘନ ଅନ୍ଧାର—ଯେପରି ଶତ ସହସ୍ର ଭୂମଣ୍ଡଳ ସେଇ ମହାଶୂନ୍ୟର ମହାଗ୍ରାସ ଭିତରେ ଲୀନ ହୋଇଯାଇଛନ୍ତି । ଧାଇଁ

ଆସିଲା ସେ ରାକ୍ଷସୀ ପର; ଗୋଟାଏ ନିର୍ଘାତ ନାଡରେ 'ମର୍ ବାଣ୍ଡପଡ଼ା' କହି ପିଲାଟାକୁ ତଳେ ପକାଇ ଦେଲା, ଅଳ୍ପ ପରକ୍ଷଣରେ ହତଭାଗିନୀ ଫୋପି ଦେଇଗଲା କୁକୁରର କ୍ଲେଦମିଶା ପଗ୍ର ଲାଳ··· ବାନ୍ତି ।

ଡାକଲି—'ଶୁଣୁଛ ?'

'ଏଁ ।'

'ରେଷ୍ଟୁର୍ଣ୍ଣ ଦୋକାନ ଅଳ୍ପ ଦୂରକୁ ଟିକଏ ଅଛି ।'

'ରେଷ୍ଟୁର୍ଣ୍ଣ ?'

'ହୁଁ ।'

'ଯିବ ? ଚାଲ'—

ସହରର ରାଜପଥ ଛାଡ଼ି ଗଳି ଭିତରେ ପହଞ୍ଚିଲୁ ମୁଁ ଓ ସୁନନ୍ଦା । ସୁନନ୍ଦାର ପଥଚଲା ଅଭ୍ୟାସ ନାହିଁ, ତାଙ୍କୁ ବାଧିଲାଣି । ହଠାତ୍ ଶୁଣିଲି କିଏ କହୁଛି—'ଦୁଇମାସର ପିଲା; ମାସେ ହେଲା ଛୀରମୂହଁ ଦେଖିନି । ମାଆ ଡାକୁଣୀ ଯାହା ପେଟ ମଦେ ତାକୁ ପିଆଇ ଦେଲା । ପିଲାଟା ତା ଅଣ୍ଟି କାନ ଖୋସି ମାଆ କୋଳରେ ସେଇଠି ତଳି ପଡ଼ିଲା; ହା ଭଗବାନ୍ ! ଅହା ।'

ମୁଁ ଅଗେଇ ଚାଲିଲି—

ସୁନନ୍ଦା ମୋର ହାତ ଧରି କହିଲେ 'କୁଆଡ଼େ ଯାଉଛ ?'

'କାହିଁକି ଶାଢ଼ୀ, ରେଷ୍ଟୁର୍ଣ୍ଣ, ତା ପରେ ଅଙ୍ଗୁର ପେସ୍ତା ଏ ସବୁ ?'

'ନା ଥାଉ'—ଦେଖିଲି ସୁନନ୍ଦାର ଆଖି ଛଳ ଛଳ କପୋଳରେ ଝାଳ ।

'—ରାମ ନାମ ସତ୍ୟ···ରାମ ନାମ ··'

'ଜଃ' କହି ସୁନନ୍ଦା ଶଯ୍ୟାରୁ କବ ଉଠିଲେ । ମୁଁ ବ୍ୟସ୍ତ ଭାବରେ ଗୋଟାଏ ଚଳନ୍ତା ଟାକ୍ସି ଅଟକାଇ, ସୁନନ୍ଦାର ଅନିଚ୍ଛା ସତ୍ତ୍ୱେ ତାଙ୍କୁ ବସାଇ ଡ୍ରାଇଭରକୁ କହିଲି, ଚଳ ବଙ୍ଗଳାକୁ ।

ଠିକ୍ ସେତିକି ବେଳେ ନାଖିଲ ଶବସଂସ୍କାର ସମିତିର ଜଣେ ସେବକ ମତେ ନମସ୍କାର କରି ମଟର ପାଖେ ଛିଡ଼ା ହେଲେ । ହାତ ଉପରେ ସମିତିର ମୁଦା ।

'ସାର୍, ବୁଢ଼ା ଅଠଦିନ ଭେବକରେ ଏବେ ଯାଏଁ ଟଳି ପଡ଼ିଲା । ଛଅଦିନ ପିଲା, ମଣିଷ, ମାଇପି, ବୁଢ଼ା ହୋଇ ଦଶ ପନ୍ଦର ଉଠେଇବାକୁ ପଡ଼ୁଛି । ଆପଣଙ୍କ ଭଳି ବଦାନ୍ୟ ବ୍ୟକ୍ତିଙ୍କ ପାଖରୁ ଏ ସମିତି କିଛି ସାହାଯ୍ୟ ଭିକ୍ଷା କରେ । ଦେବେ ସାର୍ କିଛି ?'

ସୁନନ୍ଦାର ବେପଥୁ ହାତ ବଢ଼ାଇ ଦେଲା କୋଡ଼ିଏଟି ଟଙ୍କା । ଆଖିର ପାଣିରେ ତାଙ୍କର ଆଖି ଦୁଇଟି ସେତେବେଳକୁ ବୁଡ଼ି ଯାଇଥିଲା । ଏଭଳି ଭାବପ୍ରବଣା ମାଆଙ୍କୁ ଦେଖି ସେବକଟି ବୋଧହୁଏ ସଙ୍କୁଚିତ ନ ହୋଇ କହିଲା— 'ମାଆ ଏ ଜାତି ଅଭିଶପ୍ତ । କେବେ ଶୁଣିଛନ୍ତି ନ ଖାଇ ଭୋକ ଉପାସରେ କେଉଁ ଜାତି ମରନ୍ତି ? ମଫସଲର କାହାଣୀ ନ ଶୁଣିବାହିଁ ଭଲ । ପଟାଳି ପରେ ପଟାଳି, କେବଳ ଅନାହାର ନୁହେଁ, ମହାମାରୀ—ମାଲେରିଆ । ଅଖାଦ୍ୟ ଖାଇଲେ ପିଣ୍ଡ ରହିବ ତ ମାଆ ? ମୁଁ ଯାଏଁ, ଧନ୍ୟବାଦ·· ରାମ ନାମ ସତ୍ୟ ହେ'···

ଲୋକଟି ଚାଲିଗଲା । ମୁଁ ଚାହିଁଲି, ଅମ୍ଳାନ ବଦନରେ ହୋଟେଲରେ ସେ ଖାଦ୍ୟ ଦେଇଦେଲା ।

'ସୁନ—' ମୁଁ ଡାକିଲି । ମୋର ଅର୍ଦ୍ଧ କଣ୍ଠରେ ବୋଧହୁଏ ଡାକଟା ଭୟଙ୍କର ଶୁଭିଥିବ । ସୁନନ୍ଦା ଚମକି ମୋ ମୁହଁକୁ ଚାହିଁ ରହିଲେ; ମୁଁ କହିଲି—

'ଟାକ୍ସି ଚାଲ, ବଙ୍ଗଳାକୁ ନୁହେଁ, ଶାଢ଼ୀ ··ଶାଢ଼ୀର ଦୋକାନକୁ—ଅଙ୍ଗୁର ଦୋକାନକୁ, ଜଜ୍‌ସାହେବଙ୍କ ନିମନ୍ତ୍ରଣ କରିଯିବ ଯେ···'

ସୁନନ୍ଦାର ଉଚ୍ଛ୍ୱସିତ କୋହ ସହିବାର ସୀମା ପାର ହୋଇଥିଲା । କହିଲେ, "ମତେ କ୍ଷମା କର । ପୋଡ଼ିଯାଉ ସେ ନିମନ୍ତ୍ରଣ । ମୋ ରାଣ ଖାଅ, ତୁମ ରୁମ୍‌ରେ ଯେଉଁ ଏଇଭଳି ଦୁଃଖୀ ଲୋକୀ ଶୋଷିଙ୍କର ଛବି ରହିଛି, ସେ ସବୁ ଆଜିଠାରୁ ମୋ ଘରେ ରହିବ । ଆଜି ଦେଖ—ରେଡ଼ିଓ, ଶାଢ଼ୀ, ଆଉ ସବୁ ଜିନିଷ ପାଇଁ ଯେଉଁ ସାତଶ ଟଙ୍କା ଆଣିଛ ତାହାର ଖର୍ଚ୍ଚରେ ଏମାନଙ୍କ ମୁହଁରେ ମୁଠିଏ ମୁଠିଏ ପକାଅ, ଟୋପେ ପାଣି ଦିଅ । ସେତିକ ସରିଗଲେ ମୁଁ ଆଉ ଟଙ୍କା ଯୋଗେଇ ଦେବି । ଏମାନେ କିପରି ବଞ୍ଚନ୍ତୁ ।"

ସେହି ଦିନଠୁ 'ସୁନନ୍ଦା-ଭୋଜନାଳୟ' ପ୍ରତିଷ୍ଠିତ ହୋଇଛି ପ୍ରତି ସଞ୍ଜରେ ସେଠାରେ ପାଞ୍ଚଶହରୁ ଊର୍ଦ୍ଧ୍ୱ ଭିଖାରି ଭିଖାରୁଣୀ ମୁହଁରେ ଦାନା ଦିଅନ୍ତି । ନିଜେ ସୁନନ୍ଦା ଚୁଲିରେ ବସାନ୍ତି ହାଣ୍ଡି ସାକ୍ଷାତ ଅନ୍ନପୂର୍ଣ୍ଣା । ମୋର ଜୀବନ ସାର୍ଥକ ହୋଇଛି । ମିଳେଇ ଯାଇଛି ଦୁଇ ହୃଦୟ ଭିତରେ ତୁଙ୍ଗ ବ୍ୟବଧାନ ।

ଶ୍ରୀ ବ୍ରଜକିଶୋର ଗୁପ୍ତ

# ମଶାଣିର ଫୁଲ

ପୋଡ଼ାବସନ୍ତ ଶାସନର ଜଗୁ ଡଅଢ଼ କୀର୍ତ୍ତନ କରେ, ମୃଦଙ୍ଗ ବଜାଏ, ଗଞ୍ଜାଇ ଖାଏ, ଆଉ ମୁର୍ଦ୍ଦାର ପୋଡ଼େ । ଭଲ ମଡ଼ାଚଣ୍ଡିଆ ଭାବରେ ସେ ଖଣ୍ଡମଣ୍ଡଳରେ ଜଗୁର ବେଶ୍ ଗୋଟାଏ ନାଆଁ ବି ଅଛି ।

ମୁର୍ଦ୍ଦାରଟା ଯେବେ ଜୁଇ ନିଆଁ ଉପରେ ସେଁ ସେଁ କରେ, କି ଧାର ଗୋଡଟା ନିଆଁ ସେକରେ ସେଡ଼େଙ୍ଗା ହୋଇ ଉପରକୁ ବାହାର ପଡ଼େ, କିମ୍ବା ପେଟ ଭିତର ଅଁନ୍ତବୁଜୁଳାଗୁଡ଼ାକରୁ ପାଣି ନିଗିଡ଼ ନିଆଁ ଧରେ ନାହିଁ, ତେବେ ଅନ୍ୟ ମାଲଭାଇମାନେ ଜଗୁ ଡଅଢ଼ ମୁହଁକୁ ଅନାନ୍ତି, ତା'ର ପରାମର୍ଶ ଲୋଡ଼ନ୍ତି ।

ଗଞ୍ଜେଇର ନିଶାରେ ଟିକିଏ ବେହୁସିଆର ହୋଇ ଜଗୁ ହୁଏତ ମଶାଣି ପଦାରେ ଖଣ୍ଡେ ଦୂରରେ ବସି ଢୁଳାଉଥାଏ । ସେ ଧଡ଼ପଡ଼ ହୋଇ ଉଠିପଡ଼ି ଠିଆ ହୁଏ, ତା'ପରେ କୋକେଇ ଭିତରୁ ଗୋଟାଏ ଡନାହାଡଅ ବାଉଁଶ ଓଟାର ଆଣି 'ମାର—ମାର' କହୁ ମୁର୍ଦ୍ଦାର ଉପରେ ବସାଇ ଦିଏ ଡନା ଗୁରୁଟା ପାହାର ।

ମୂର୍ଚ୍ଛାରର ମୁଣ୍ଡଟା ହୁଏତ ଚୂନା ଚୂନା ହୋଇଯାଏ—ଦନ୍ତ ବାହାର ପଡ଼ ଖଣ୍ଡେ ଚକଡ଼ାରେ ନିଅଁ ନିଭଯାଏ । ଅମାନିଆ ଗୋଡ଼ଟା ଠେଙ୍ଗାମାଡ଼ରେ ଅଣ୍ଟୁଠୁ ଭାଙ୍ଗିପଡ଼ି ଲେଟେ ଛଟଳ କାଠ ସନ୍ଧିରେ । ପେଟଟା ଫାଟି ହୋଇଯାଏ ଦଫାଳ, ଅନ୍ତ୍ରନାଡ଼ୀ ଭିତରେ ଭିତରେ ନିଅଁର ଲହ ଲହ ଜିଭ ଗୃଞ୍ଜି ଗୃଞ୍ଜି ଖେଳିଯାଏ । ଆଖି ଗିଳୁଳାକରେ ସବୁ ଜଳପୋଡ଼ ହୋଇଯାଏ ପାଞ୍ଜିଣ ।

ଅଣ୍ଟୁଏ ପାଞ୍ଜିଣ । କୁଳ, ଗ୍ଲଞ୍ଚୁଣୀ, ହାଣ୍ଡି, ଖପର, ଛୁଣ୍ଡା କତରା, ସନ୍ତସନ୍ତିଆ ମଶାଣି ପଦା । ନଖ, ବାଳ, ଛିକ ଛିକ ହାଡ଼, ଅଲରା ବଲରା ଅସନା ।।

ଜଗୁ ଡଅଡ଼ ଶୁପି ହୋଇ ଫେର ଅସେ । ପୋଖରୀ ତୁଠରେ ତେଲ ଲଗାଇ ଲଗାଇ ଜଙ୍ଘ ଉପରେ ଗୁଚୁଡ଼ା ମାରୁ ଅସ୍ତମରେ କହେ "ଧଅଁଙ୍କ କୃପାରୁ କାମଟା ସୁରୁଖୁରୁରେ ବଢ଼ିଗଲା ।"

ଗାଆଁରେ ଯେତେବେଳେ ହାଡ଼ାବାନ୍ତି ବ୍ୟାପେ—ଠାକୁରାଣୀ ପଡ଼ନ୍ତି—ମଡ଼ କୁହ କୁହ ହୁଏ, ଜଗୁ ଡଅଡ଼ର ଖାତର ସେତେବେଳେ ଗାଁରେ ଭାର ବଢ଼ିଯାଏ । ସମସ୍ତେ ଆସି ତାକୁ ଖୁସାମତ କରନ୍ତି । କିଏ ଅଖିରୁ ଲୁହ ଗଡ଼ାଏ, କିଏ ଖୋସଣିରୁ ପଇସା ବାହାର କରେ, କିଏ ବା ହାତଓଠ ଧର 'ବାପ ଲୋ, ଧନ ଲୋ' କରେ, ଜଗୁ ଡଅଡ଼ ବଡ଼ ଗମ୍ଭୀର ହୋଇ ସଭଙ୍କ ନେହରା କଥା ଶୁଣେ । କିନ୍ତୁ ହଠାତ୍ କିଛି କହେ ନାହିଁ ।

"କାଲି ରାତିଠୁଁ ସବୁ ଭିତରେ ମଡ଼ା ପଡ଼ି ଗନ୍ଧେଇ ଗଲାଣି ।"

"ଭୁଆସୁଣୀ ବୋହୂଟା ଦୁଇଦିନ ହେଲା ଘର କଣରେ ମର ସଢ଼ୁଛି··· ।"

ଏହିପରି ନାନା ଭଳିର ଅଳି ଅଳ୍ପ ଜଗୁ ପାଖରେ ଅସି ପଡ଼େଁ ।

ଜଗୁ ଛାଡ଼ ପାଉଣାପତ୍ର ବିଷୟରେ ଜମା କାହାର ଭ୍ରୂକ୍ଷେପ ରହେ ନାହିଁ । ଦରଦ ଗଞ୍ଜେଇ, ଟୋକାଏ ଅଫିମ, ଗୃହଅଣା ଅଣ୍ଟା ଖୋପା ନ ହେଲେ ସେ କୁଅଡ଼କୁ ଚଳିବ ନାହିଁ । ଏହାଛଡ଼ା ଶବ ପାଖ ଛୁଟଲଗା ଦଶଘର କମିଛା ଇତ୍ୟାଦି ଜଗୁର ଲାଭ ରହୁଛି ।

ସଧବା ସ୍ତ୍ରୀଲୋକ ମଡ଼ା ହେଲେ ଜଗୁର ଟିକିଏ ଲାଭ ବେଶି । ଥିଲାଘର ହୋଇଥିଲେ କାନର ନୋଳିଟା, ମଲ୍ଲିକଢ଼ିଟା କିମ୍ବା ନାକର ଗୁଣାଟା, ଅଭ ନଥିଲା ଘର ହୋଇଥିଲେ ଗୋଡ଼ଅଙ୍ଗୁଠିର ରୂପାମୁଦିଟା ଜଗୁକୁ ଭାଇ ଦକ୍ଷିଣା ମିଳେ । ମୁର୍ଦ୍ଦାରଟାକୁ ନିଆଁରେ ଚଢ଼ାଇବା ଆଗରୁ ସେ ତା' ଦେହଟାକୁ ଖିନ୍ନଭିନ୍ନ କରି ଏତରଫି ନେଇ କେଉଁଠି ଅଳଙ୍କାର ପଡ଼ି ରହିଛି ଅଛି କି ନାହିଁ ଦେଖେ, ଥିଲେ କାଢ଼ି ରଖେ । ବେଳେ ବେଳେ ମଡ଼ା ଦେହରୁ ନୋଳି ମଲ୍ଲିକଢ଼ି କି ଗୁଣା ବସଣି ସହଜରେ ନ ବାହାରିଲେ ଜଗୁ ତଅଳ ବିରକ୍ତ ହୋଇ ଦାନ୍ତ କାମୁଡ଼ି ବହୁତ ଝିଙ୍କା ଓଟରା କରି ଅଳଙ୍କାରଗୁଡ଼ାକ ମୁର୍ଦ୍ଦାରର ନାକରୁ, କାନରୁ ଛଣ୍ଡାଇ ଆଣେ । ନାକଦଣ୍ଡି ଛିଣ୍ଡିଯାଏ, କାନଟା ଖଣ୍ଡିଆ ହୋଇଯାଏ, ନେଳିଆ ନେଳିଆ ପାଣିଆ ରକ୍ତ ବୋହିଆସି ଶବଟାର ମୁହଁଯାକ ସାଲୁ ବାଲୁ ହୋଇଯାଏ, କିନ୍ତୁ ଜଗୁ ତଅଳର ସେଥିପ୍ରତି ଖାତିର ନ ଥାଏ । ଏଇଟା ଛାଡ଼ କାତ ଦଳିଆ ଦେହଘଷିଆ କାମ, ଏକ ପ୍ରକାର ଉପୁରି ବୃତ୍ତି । ଲମ୍ବିତ କରି କରି ସେ ପଥର ପାଲଟି ଯାଇଛି ।

ପୋଖତା ମୁର୍ଦ୍ଦାର ମିଳିଲେ ଜଗୁ ତଅଳ ଧୋବଲି ଚକଟିଏ ଅଣ୍ଟାରେ ନ ଖୋସିଲେ କାହାକୁ ଛୋଟେଇ ଉଠାଇବ ନାହିଁ ।

ତା' ପାଉଣାରୁ ଟିକିଏ ଏ ପାଖ ସେପାଖ ହେଲେ ସେ ବାସିମଡ଼ା କରି ଦେବ ବୋଲି ଧମକ ଦିଏ—ଅନ୍ୟ ମାଲସ୍ୱାଇମାନଙ୍କୁ ଶିଖେଇ ମଝେଇ ମେଳବାନ୍ଧ ଅଡ଼ି ବସେ ।

ଝଙ୍କାଟାଏ ମିଳିଲେ ଅଦ୍ଧ୍ୟ ଢେଙ୍ଗ୍ରୁର ଢାଳେ ଢାଳେ ପାଦ ପକାଇ "ରାମ ନାମ ସତ୍ୟ ହେ" ଘାଣ୍ଟି କରି ଜଗୁ ଡଅଡ଼ି ବଡ଼ ପଡଅରରେ ଦାଣ୍ଡ ମଝିରେ ପାଲିଙ୍କ ପକାଇ ଶୁଏଲେ । ତାର ମୁଗୁନି ପଥର ପରି କଳା ଦେହରେ ଧଳା ପଇତା ଝିଅଙ୍କ ଦୂରରୁ ଜକ ଜକ ଦିଶୁଥାଏ··· ।

ତାର ବଡ଼ ପାଟିରେ ଗାଆଁ ସାରା ଉଚ୍ଛୁଳିପଡ଼େ । ସାହିଯାକର ମରଦ ମାଇପେ ଅସି ଦାଣ୍ଡରେ ଗଦା ହୋଇଯାନ୍ତି । ସାନ ସାନ ପିଲାଗୁଡ଼ାକ ଡର ଭୟରେ ଯାଇ ଲୁଚନ୍ତି ଘରେ ।

ମଶାଣିରେ ଧୋବା ଗୋଟାଏ ନନ୍ଦବୁଣ୍ଡିରେ ଗର୍ଭିଣୀ ମାଇପିର ପେଟ ଫାଡ଼ି ପିଲାଟାକୁ ବାହାର କରି ଦେଲେ ଜଗୁ ଡଅଡ଼ି ଦୁଇଟା ଚୂଳି ଖୋଳି ମା' ପିଲା ଦିହିଙ୍କି ଶଉପଟାଙ୍ଗ କରି ଶୁଆଇ ଦିଏ । କେବେ କେବେ ପୁଣି ଗୋଟାଏ କୁଢ଼ରେ ଦୁହିଙ୍କି ଲଗାଲଗି କରି ଏକାଠି ଶୁଆଇ ଦେଇ ନିଆଁ ଲଗାଇ ଦିଏ । ଗୋଟାକରେ ଜାଗା ନ ହେଲେ କେଉଁଣାକାଠି ଖଣ୍ଡକରେ ସେ ପିଲାଟାକୁ ଟେଙ୍କୁ କୋଗୁ କରି ମାଉଁସ ପିଣ୍ଡୁଳାଏ ପରି ଜଳନ୍ତା କାଠ ସନ୍ଧିରେ ଫୋପାଡ଼ି ଦିଏ ।

ଏହିପରି ଭାବରେ ଜଗୁ ଡଅଡ଼ି ଅମଳ ହେଉଥିବା ଧାନ କେତେ ଭରଣି ବାଦ ବେଳେ ବେଳେ ଉପୁରି ଦି'ପଇସା ରୋଜ-ଗାର କରି ନିଜେ ଚଳେ, ଘର ଚଳାଏ, ଦବାନବା ବାହା ବେଭାର କରେ ।

କେହୁ ତାଙ୍କୁ ମୁହଁଫିଟାଇ କିଛି କହୁ ପାରନ୍ତି ନାହିଁ । ସେ ଗାଁରେ ଜଗୁ ଛଡ଼ା ଅନ୍ୟ ପୋଷତ ଜାଣିଲବାଲା ବ୍ରାହ୍ମଣ ମାଲଭାଇ ଆଉ କେହୁ ନାହାନ୍ତି ।

କେହୁ ଜଗୁର ପାଜଣା କମାଇବାକୁ ବସିଲେ ଜଗୁ ନିଜର କୃତିତ୍ୱ ତୁଳନାରେ ସେ ଦାବି କରୁଥିବା ପାଜଣା କିଛି ନୁହେଁ ବୋଲି ନାନା ପ୍ରକାର ଯୁକ୍ତି ଦେଖାଏ । ନିଜର ପଟୁଆସ୍ତ ଦେଖାଇବାକୁ ପାଇ ସେ ଅତୀତର ନାନା ଘଟଣାର ପୁନାବୃତ୍ତି କରି ପ୍ରମାଣ କରେ ଯେ, ତା' ଭଳି ମୁର୍ଦାର ପୋଡ଼ିବା ଲୋକ ଏ ଜଗତରେ ଦୁଇ ଜଣ ନାହାନ୍ତି । ସେ ଖୁବ ଗର୍ବ ଅନୁଭବ କରେ ।

ଗତ ସ ଲେ ନରସିଂହ ମିଶ୍ରଙ୍କ ଭାଇଯାକୁ କମିତ ତତ୍ତ୍ୱ ଅଗ୍ନିକ ମେଘବର୍ଷାରେ ଯୋଡ଼ିଦେଇ ଅଇଲା, ଅଇଲା ବେଳେ ସାତଗଣ୍ଡୁଆ ଚୋଟା ମୁଣ୍ଡରେ କମିତ ଗୋଟାଏ ବେଳକଟା ମାଦଳ ହାଣ୍ଡିରେ ପଡ଼ିଲା, ତା ପରେ ପୁଷୁମାସିଆ ଶୀତଦଦନ ସ୍ରୁତରେ କମିତ ଜଳଓଦର ବେମାରରେ ମରିଥିବା ନାଥ ବ୍ରହ୍ମାକୁ ପୋଡ଼ିଲାବେଳେ ମୁର୍ଦାର ପେଟରୁ ଦୁଇମାଠିଆ ପାଣି ବାହାରି ଅସି ଜୁଇ ନିଆଁ ନିଭାଇ ଦେଲା, ଜଗୁ ପୁଣି କମିତ କୌଶଳ କରି ଏତେବଡ଼ ଅସାଧ ମଡ଼ାକୁ ପୋଡ଼ ପାରିଲା, ଏହିସବୁ ପୁରୁଣା କାହାଣୀଗୁଡ଼ାକ ବଡ଼ ଦକ୍ଷ ଭାବରେ ସେ ବର୍ଣ୍ଣନା କରିଯାଏ ।

ଜଗୁ ତଅଣ୍ଡର ଅଲଜ୍ଝତା ଓ ମୁର୍ଦାର ତାହା ବଦଆର ଅଗାଧତା ଯେ କେତେ ବେଶି, ତାହା ଯେକୌଣସି ଗ୍ରାହକ ତା' ସହିତ ଘଣ୍ଟାଏ କଥାଭାଷା ହେଲେ ବେଶ୍ ବୁଝି ପାରିବ ।

ସେଇ ସଞ୍ଜବୁଡ଼େ ଜଗୁ ଡଅଡ଼ ଭାଗବତ ଘରେ ବସି ନିଜ ଅନୁଭୋଗ କଥାଗୁଡ଼ିକ ସମସ୍ତଙ୍କି ଥରେ ଲେଖାଏଁ କହି ଶୁଣାଏ । ଝିପିଝିପି ମେଘୁଆ ପାଗରେ ଅନେକ ଶ୍ରୋତା ତାଙ୍କୁ ଘେରି ବସନ୍ତି, ଗଞ୍ଜେଇ ଚିଲମରୁ ଦମେ ଟାଣି ଜଗୁ ପହିଲେ ଗୋଟାଏ ଗଳା ଖଙ୍କାର ମାରେ । ଶ୍ରୋତାମାନେ ବୁଝି ପାରନ୍ତି ଯେ, ଗପ ଆରମ୍ଭ ହବ ।

ଥରେ ଗୋଟାଏ ପୋଖତ ମଲ୍ଲା ଡାହା କରି ଫେରିଲାବେଳେ ମୁକ୍ତାଙ୍କର ପାଖ ଦୋକାନିଆ ଅମ୍ବଚଲେ ତାହିରେ ବସି ଗୋଟାଏ ପିତାଶୁଣୀ କମିତ ଏନ୍ତୁଡ଼ି ଜାଲ ତା' ପିଲଙ୍କୁ ଘେରିଥିଲା—ତାହା ଏକ ନିପୁଣ ଶିକାରର ଭଳି ଜଗୁ ବର୍ଣ୍ଣନା କରିଯାଏ । ଶ୍ରୋତାମାନେ ଡରରେ ଟିକଏ ଜାକିଜୁକି ହୋଇ ତାଙ୍କୁ ଲାଗି ବସନ୍ତି ।

ଏହିପରି ଭାବରେ ସେଇ ଛୋଟ ବ୍ରାହ୍ମଣ ଶାସନଟିରେ ଜଗୁ ଡଅଡ଼ର ଜୀବନ କଟେ ।

•

ଅଗ୍ରିଣମାସ ରାତି । ସଞ୍ଜବେଳୁ କମିତ ଟିକଏ ମେଘୁଆ ହୋଇଛି । ଜଗୁ ଡଅଡ଼ର ମୁଣ୍ଡଟା ଭାରି ବାଇଥାଏ ନା କଣ, ସେ ଦୁଇକାନ ପାଖ କପାଳରେ ଟିପେ ଲେଖା କଲରୁନ ବୋଳି ମୁଣ୍ଡରେ କମ୍ପୋଟର ଗୁଡ଼ାଇ ଦାଣ୍ଡପଟ ଗୃଦମା ଉପରେ ବସି ହରିବଂଶ ଶୁଣୁଥିଲା ।

ଗାଆଁ ଭିତରେ ଜାଦଣା ଶୁଣାଗଲା, ଅବସାହି ଦୋକାନରୁ ପାନଗୁଆଗୁଣ୍ଡି ଧରି କିଏ ଜଣେ ବାହୁଡ଼ୁଥିଲା । ସେ ଖବର ଦେଲା ଯେ, କଟିଆ ମା ବୁଢ଼ୀର ବୋହୂଟି ମରି ଯାଇଛି ।

ଗୃହୁଁ ଗୃହୁଁ ଗାଆଁ ଗୋଟାକରେ ହୁରି ଝଡ଼ ପଡ଼ିଗଲା । ଭଗୁ ତଅଉ ଦ'ପଇସା ରୋଜଗାର ହେବ ଭାବି ମନେ ମନେ ଖୁସିଟାଏ ହେଲା ।

କେତେ ଲୋକ ଆସି କେତେ କଥା କହିଗଲେ । ସାଙ୍ଗ ମାଇପେ ବାରକଥା ଫୁସ୍‌ଫାସ୍ ହେଲେ । କିଏ ସେ କହିଲା କଣ ଔଷଧି ମଉଷଧି ଖାଇଥିଲା—ବିଷ ଚଢ଼ିକି ଯାଇ ଦେହ ଫାଟି ଗଲା ।

ଭଗୁ ତଅଉ ଗୁମ୍ ହୋଇ ସବୁ ଶୁଣିଲା, ମୁହଁ ବାଙ୍କେଇ ଦେଲା । କାଳେ ଅଟକ ହେବା ଭୟରେ ସେ ଏତେ ବଡ଼ ରୋଜଗାରର ସବୁ ଆଶା ଛାଡ଼ିଦେଲା ।

ଜଟିଆ ମା ବୁଢ଼ୀର ସଂସାରରେ କେହି ନାହିଁ—ଶାଶୁ ବୋହୂ ଦ'ଜଣ । ପୁଅଣି ହେବାର ମାସକ ପରେ ପୁଅ ଯାଇଥିଲା କଲିକତା—ଟଙ୍କା ରୋଜଗାର କରି ଦେଣା ଶୁଝିବ ବୋଲି । ତନିବର୍ଷ ହେଲାଣି କିଛି ଖୋଜ ଖବର ନାହିଁ । ପ୍ରଥମେ ଚିଠି ଖଣ୍ଡେ ଖଣ୍ଡେ ଦେଉଥିଲା । କିନ୍ତୁ ବର୍ଷେ ହେଲା ସେତିକ ବି ବନ୍ଦ । ସେ ଗାଆଁର କେତେକ କଲିକତା ଫେରନ୍ତା ବ୍ରାହ୍ମଣ ପୂଜାରୀ କହନ୍ତି ଯେ, ସେ କେଉଁଠି ଗୋଟାଏ ମାଇକିନିଆ ଧରି କଲିକତା ମାଟିଆ ବୁରୁଜରେ ରହୁଛି । ଘରେ ଥିଲା ଖାଲି ବୋହୂଟି । ଆଜି ସେ ବି ଗଲା, ସଙ୍ଗେ ସଙ୍ଗେ ବୁଢ଼ୀ ମୁଣ୍ଡରେ ଲଦି ଦେଇ ଗଲା କାଳକାଳକୁ ଅପବାଦର ବୋଝ । ବୁଢ଼ୀ ବ୍ରାହ୍ମଣୀର ମୁଣ୍ଡରୁ ହାତ ଛାଡୁନାହିଁ ।

ତାର ଅବସ୍ଥା ସେ ଦିନ ଗାଅଣି ଗାଇଲେ ସରି ନ ଥାନ୍ତା, କିନ୍ତୁ କେତେ ଜଣ ଗାଆଁର ମୁରବି ମଣିଷ ବାହାର କଥାଟା ସମ୍ଭାଳି ନେଲେ । ବଡ଼ ବଡ଼ ମୁରବିମାନେ ବୋହୂକୁ ଆଗରୁ ଯାଞ୍ଚ କରି ନ ଥିବା ଯୋଗୁଁ ଛଟିଆ ମାକୁ ଗୁଡ଼ାଏ ଗାଳିମନ୍ଦ ଦେଲେ ମଧ୍ୟ ଶେଷକୁ ଫଇସଲା କରି ଦେଇ କହିଲେ, ଜଲଦି ଲାସ୍ ଖତମ କରି ଦେବାକୁ ହେବ । ନୋହିଲେ ଛଟିଆ ଥାନାରେ ଖବର ଦେଲେ ଗୋଟା ଶାସନ ନାଆଁରେ କଳଙ୍କ ରହିବ, ସମସ୍ତେ ତ ପୁଣି ଝିଅବୋହୂ ଧରି ଘର କରିଛନ୍ତି ।।

ଛଟିଆମା ବୁଢ଼ୀ ଦାନ୍ତରେ କୁଟା ଦେଇ ସମସ୍ତଙ୍କି କୋଟି କୋଟି ପ୍ରଣାମ କଲା । ତାକୁ ଏ ଘୋର ବିପଦରୁ ରକ୍ଷା କରିଥିବା ଯୋଗୁଁ ସମସ୍ତଙ୍କ ପାଖରେ କେତେ କୃତଜ୍ଞତା ଜଣାଇଲା ।

ମଡ଼ା କାଢେଇବା ପାଇଁ ଗାଆଁର ତିନି ଚାରି ଜଣ ଟେଣ୍ଡିଆ ଆଗଭର ହୋଇ ବାହାରିପଡ଼ିଲେ । ପାଳ ଦଉଡ଼ି ବଳା ହେଲା, କୋକେଇ ସଜଡ଼ା ହେଲା, ଢୁଲା, ଖପରା, ଶିକା, ଘୁଷୁରିଣୀ, କାଠ-ବାଡ଼ି ସବୁ ଆସି ଦାଣ୍ଡରେ ଥୁଆ ହେଲା । ମୁର୍ଦାରର ଦେହ ମୁଣ୍ଡରେ ଲୁଗା ଗୁଡ଼ାଇ ସମସ୍ତେ ତାକୁ ଟେକି ଆଣି କୋକେଇରେ ବାନ୍ଧିଲେ । ମାତ୍ର ଜଣେ ପୁରୁଖା ମାଲ୍‌ଭାଇ ନ ହେଲେ ନ ଚଳେ । ଅଧଘଣ୍ଟାକ ଭିତରେ ଲାସ୍ ଖତମ ନ କଲେ ବିପଦର ଆଶଙ୍କା, ଥାନା ବାବୁ ଖବର ପାଇବେ ତ ଗାଆଁଯାକ ସମସ୍ତେ ବନ୍ଧା ହୋଇଯିବେ । ଗାଆଁରେ ତ ଖଟୁଆ ଲୋକର ଅଭାବ ନାହିଁ ।

ମୁରବିମାନେ କହିଲେ—'ଡଅଣ୍ଡିଙ୍କି ଡାକ ।' ଡଅଣ୍ଡି ନ ଗଲେ ଏଡ଼େ ବଡ଼ କାମ ସୁରୁଖୁରୁରେ ତୁଟିବ ନାହିଁ ।

ଜଗୁ ଡଅଙ୍ଗ ପାଖକୁ ଡକରା ଗଲା, ମାତ୍ର ଜଗୁ ଡଅଙ୍ଗ ଅମଙ୍ଗ । ସେ ଏକ ଜିଦ୍ ଧରି ବସିଲା । କହିଲା, "ମୁଁ ସେଇଟାକୁ ଛୁଇଁବି ? ଅସତୀ ଦୋଗୁରୁଣୀଟାକୁ ମୁଁ କାନ୍ଧରେ ବସେଇବି ?"

ସମସ୍ତେ ଫାଟିଫୁଟି ଗଲେ । ଜଗୁ ଅଚଳ, ଅଟଳ ।

ଶେଷରେ ଗାଆଁର ବୁଢ଼ା ବୁଢ଼ା ମୁରବିମାନେ ବହୁତ ବୁଝାବୋଲା କରିବାରୁ ଜଗୁ ଡଅଙ୍ଗ ମୁର୍ଦାର କାନ୍ଧେଇବାକୁ ରାଜି ହେଲା, ମାତ୍ର ପାଞ୍ଚ ଟଙ୍କା ନ ପାଇଲେ ସେ ଏତେବଡ଼ ପାପକର୍ମ କରିପାରିବ ନାହିଁ ବୋଲି ସଫା ଜଣାଇ ଦେଲା । କହିଆ ମା ବୁଢ଼ୀର ସରାଗାତ ଖୋଲା ହୋଇ ଯାହା ବାହାରିଲା, ତାହା କାଠ, ତରସିଳ, ଧୋବା, ଭଣ୍ଡାରିଙ୍କୁ ନାଅଣ୍ଟ । ଶେଷରେ କଥା ଛିଣ୍ଡିଲା ବୋହୂ ନାକଟିରେ ଯେଉଁ ସୁନା ଗୁଣାଟି ଅଛି, ସେଇଟାକୁ ଜଗୁ ଡଅଙ୍ଗ ପାଇବ ।

ଜଗୁ ଡଅଙ୍ଗ ଖୁସି ହୋଇ ଡାକ ଛାଡ଼ିଲା—"ରାମନାମ ସତ୍ୟ ହେ ।"

ମଶାଣି ପଦା—ସନ୍ସନିଆ, ଅଝଟା । ହାଣ୍ଡି, କାଠ, ମଣିଷ-ମୁଣ୍ଡ, କୁଲା, ଅଟିକା, ପୋଡ଼ାଅଙ୍ଗାର ଭିତରେ ଗଦା ଗଦା ପାଉଁଶ । ଗୁହଅଡୁ ଭାସି ଆସୁଛି ଗୋଟାଏ ବାଉଟ ଅଇଁଶିଣିଆ ଗନ୍ଧ ।

'ପଥଶ୍ରାଦ୍ଧ' ସରିଲା । ଜଗୁ ଡଅଙ୍ଗ ଗୋଟାଏ ମସ୍ତବଡ଼ ଚୁଲି ଖୋଳିଲା । ତା'ପରେ ମୁର୍ଦାରଟାକୁ ନେଇ କାଠ ଗଦା ଉପରେ ଚିତ୍‌କରି ଶୁଆଇ ଦେଇ ତା' ମୁହଁକୁ ଲୁଗା କାଢ଼ି ଦେଲା ।

ସୁ'ବା ଭରି ଓଜନର ସୁନା । ଲକ୍ଷଣ ଅଳ୍ପରେ ଜଗୁ ଡଅଙ୍ଗ ଦେଖିଲା ଗୁଣାଟା ମୁର୍ଦାରର ନାକ ଉପରେ ଚକ୍ ଚକ୍ କରୁଛି ।

ମେଘ କଟିଯାଇ ଅସ୍ତ ଅସ୍ତ ଜହ୍ନ ପଡ଼ୁଛି, ମୂର୍ଦ୍ଧାବର ଶେତା ଧଳା ମୁହଁ ଉପରେ ଜହ୍ନ ଅଲୁଅର ଝାପସା ଛାଇ ।

ସଙ୍ଗୀ ଘରମାନେ କହିଲେ, "ଜଲଦି ଜଲଦି କାମ ସାର । ପୁଲିସ ଅସିବ ତ ସବୁ ଭଣ୍ଡୁର ହୋଇଯିବ ।"

ଜଗୁ ଗୁଣାଟାକୁ ନାକରୁ ଛଡ଼ାଇ ଅଣିବାକୁ ହାତବଢ଼ାଇଲା । ସେ ଦେଖି ପାରିଲା, ଛୋଟ ବୋହୂଟିର ଫିକା ମୁହଁଟି ଜହ୍ନ ଅଲୁଅରେ ଗୋଟିଏ ଦରମଉଳା କଇଁଫୁଲ ପରି ଦେଖାଯାଉଛି । ତା' ମୁହଁ ଚାରିପଟେ ଘେରି ରହିଛି ଗୋଟାଏ କଳା କଳା କୁଞ୍ଚ କୁଞ୍ଚିଆ ବାଳର ଜଙ୍ଗଲ । ଠିକ ଯେମିତ ଅକାଶର ଚନ୍ଦ ପଛଆଡ଼େ ରହିଛି କଳା ମେଘର ବହଳିଆ ଛାଇ ।

ବୋହୂଟିର ମୁହଁ ଉପରେ ପହିଁର ପହିଁର ଖେଳୁଛି; ମଉଳା ଫୁଲର ଲାବଣ୍ୟ । । ତାର ଅଲିବ୍ରିସଲିବ୍ରି ବାଳଗୁଡ଼ିକ ଉପରେ ଜହ୍ନ ଅଲୁଅ ନହଡ଼ି ଭାଙ୍ଗି ଭାଙ୍ଗି ନୋଟି ଯାଉଛି ।

ଜଗୁ ହାତ ଫେରାଇ ଅଣିଲା । ତା' ପରେ ସେ ଅନାଇଲା ଅକାଶରେ ଫିକା ଜହ୍ନଟା ଅଡ଼କୁ ।

ଜଗୁ ଇମିତ ଅନେକ ମୂର୍ଦ୍ଧାର ପୋଡ଼ିଛି । କିନ୍ତୁ କେବେହେଲେ ଦିନେ ସେ ମନ ଭିତରେ ଇମିତ ଝଡ଼ ଅନୁଭବ କରିନାହିଁ । ଏହି ଛୋଟ ସୁନ୍ଦର ମୁହଁଟିକୁ ଅସୁନ୍ଦର କରି ସୁନାର ଗୁଣାଟାକୁ କାଟି ଅଣିବାକୁ ତାର ହାତ ଚଳିଲା ନାହିଁ, ବୋହୂଟିର ନାକଟି ଉପରେ ସେ ଗୁଣାଟା ତା' ଅଖିରେ ଭାରି ଚମତ୍କାର ଦେଖା ଯାଉଥିଲା । ସେ ଏହି ନାରୀଟି ସମ୍ବନ୍ଧରେ କେତେ କଣ ମନ ଭିତରେ ଭାବି ଯାଇଥିଲା ।

ଏହି ସମୟରେ ଝଗୁର ମନେ ପଡ଼ିଲା ଆଜି କିଛି ଧନ ପାଇଥିଲେ ବୋହୂଟି ହୁଏତ ହୋଇଥାନ୍ତା ଗୋଟିଏ ମାଆ । ଆଜି ହୁଏ ତ କେତେ ଜଣ ସେ ହୋଇ ପାରିଥାନ୍ତା । କିନ୍ତୁ କିଛି ସେ ହୋଇ ପାରିଲା ନାହିଁ ।

କାହାର ଦୋଷ ?

ଝୁପି ଝୁପିକା ଜହ୍ନ ଆଲୁଅର ଅସରନ୍ତି ସମୁଦ୍ର ମଝିରେ ନିଶୂନ୍ ମଶାଣି ପଦାର ଲଙ୍ଗଳା ବୁକୁ ଉପରେ ଶୋଇଥିଲା ଗୋଟିଏ ଦର ଫୁଟିଲା ନାସ୍ତି, ଏକୁଟିଆ । ବାସ୍ତବିକ ବଡ଼ ଏକୁଟିଆ ସେ । ମଡ଼ାବୁହା ଝଗୁ ଡଅଡ଼ ଡାକୁର ନିରଖି ନିରଖି ଦେଖୁଥିଲା । ତାର ଅଶିକ୍ଷିତ ଗାଉଁଲି ମନ ନିଜ ଭାଷାରେ ଭାବୁଥିଲା—ବାସ୍ତବିକ ଭାରି ଏକୁଟିଆ ସେ, ଖାଲି ଅଳ୍ପ ନୁହେ, ଜୀବନସାରା ଧରି ସେ ଇମିତ ଏକାକିନୀ ।। ଏଇ ନିଛାଟିଆ ଦହଦହଣିଆ, ଏକ ଘରକିଆ ଜୀବନକୁ ବଦଳାଇ ଟିକିଏ ଅନ୍ୟ ପ୍ରକାର କରି ବଞ୍ଚିବାର ସ୍ୱାଦ ଅନୁଭବ କରିବାକୁ ଯାଇ ସେ ଆଜି ହୁଏତ ହୋଇଛି ମଶାଣିର ମଡ଼ା ।। ବୋହୂଟିର ପାଉଁଶିଆ ମୁହଁ ଭିତରେ ସେ ଦେଖି ପାରିଲା ଅନେକ ଧନର ବଞ୍ଚିବାର କ୍ଷୁଧା ।।

ଝଗୁକୁ ଡେରି କରୁଥିବାର ଦେଖି ସଙ୍ଗୀ ମାଲି ଭାଇମାନେ ବିରକ୍ତ ହେଲେ । ଧମକ ଦେଇ କହିଲେ—"ତୁ ଇମିତ ଡେରି କଲେ ଆମେ ମୁର୍ଦ୍ଦାର ଫୁର୍ଦ୍ଦାର ଛାଡ଼ି ପଳାଇଯିବୁ । ପୁଲିସ ଆସିବ ତ କିଏ ଦାୟୀ ହେବ ? ନେ ତୋ ଗୁଣାଠା ବାହାର କରି ନେ—ନୋହିଲେ ଆମେ ନିଆଁ ଲଗାଇ ଦେବୁ । ଗୁଣାଠା ନେବୁ ବୋଲି ତ ମରି ଯାଉଥିଲୁ, ଇଲଗେ ଇମିତ ହାତ ଚଳୁନାହିଁ କିଆଁ ?"

ଜଗୁ ତଅଡ଼ର ସ୍ୱପ୍ନ ଭାଙ୍ଗିଗଲା । ସେ ବଡ଼ ଲଜ୍ଜିତ ବୋଧ କଲା । ତଥାପି ଭିତର ଦୁର୍ବଳତାକୁ ଘୋଡ଼ାଇ ରଖିବା ପାଇଁ ସେ ବାହାରେ ପ୍ରକାଶ କଲା –

"ଛି ! ଛି ! ଏ ମୁର୍ଦ୍ଦାର ଗୁଣ୍ଡାଟାକୁ ମୁଁ ଘରେ ଭର୍ତ୍ତି କରିବି ? ସେ ଯେ ପାପଗର୍ଭ—"

ସଙ୍ଗୀମାନେ ପଚାରିଲେ, "ତୁ ତେବେ ନବୁ ନାହିଁ ? ଆମେ ନିଆଁ ଲଗାଉଛୁଁ ?"

ଜଗୁ ତଅଡ଼ ଅନ୍ୟମନସ୍କ ଭାବରେ ଜବାବ ଦେଲା—"ହଁ, ହଁ, ନିଆଁ ଲଗାଇ ଦିଅ । ଭଲ କରି ନିଆଁ ଲଗାଅ । ସବୁ ଯିମିତି ଜଳି ପୋଡ଼ି ପାଉଁଶ ହୋଇଯିବ ।"

ହୁରୁ ହୁରୁ ହୋଇ ନିଆଁ ଜଳି ଉଠିଲା । ନିଆଁର ଲକ୍ ଲକ୍ ଜିଭ ନିମିଷକେ ସବୁ ଗ୍ରାସି ନେବାପାଇଁ ବସିଥିଲା । ବୋହୂଟିର ଗୋରା ମାଉଁସିଆ ଦେହଟା ନିଆଁରେ ସିଝି କଳାକାଠ ପଡ଼ିଗଲା; ତା' ପରେ ଫୋଟକା ହୋଇ ସେଥିରୁ ପରସ୍ତକୁ ପରସ୍ତ ଖୋଳପା ଛାଡ଼ିଗଲା ।

ଜଗୁ ତଅଡ଼ ନିସ୍ତବ୍ଧ ହୋଇ ସେଇ ପୋଡ଼ି ଯାଉଥିବା ଦେହଟା ଆଡ଼କୁ ଚାହିଁଥିଲା ।

ଦୂର ଝୋଟଳାବୁଦା ଉପରେ ପେଚା, ଶାଗୁଣା ଆଉ ଭୁଇଁ-କୁକୁଡ଼ାମାନଙ୍କର ହାଟ ବସିଥିଲା । ଅନେକ ଦୂରରୁ ଧାନବିଲ ଅରପାରିରୁ ଏଇ ସମୟରେ ଭାସି ଆସିଲା ଗୋଟିଏ ଅଣ୍ଡିରା ବିଲୁଆର କାନଫଟା ହୋକିଲା ରଡ଼ି ।

ଅସ୍ଥି—ଅଙ୍ଗାର, ହାଡ, ପାଉଁଶ, ଅଙ୍ଗାର । ତୁଳ ଭିତରୁ କମ୍ପିତ ଗୋଟାଏ ଚର୍ମ ପୋଡ଼ା ଗନ୍ଧ ପବନରେ ଭାସିଆସି ଗୃହ-ଅଡ଼େ ବାହୁଁ ହୋଇଗଲା ।

ସଙ୍ଗୀ ଭାଇମାନେ ଲଗୁଙ୍କୁ ଉଦ୍ଦେଶ୍ୟ କରି କହିଲେ—"ତୁ ସେଇ ହୋମୁବୁଣୀଟାର ଅଳଙ୍କାରଗୁଡ଼ାକ ତୋର ପିଲାଟୁଅ ଘରେ ଭର୍ତ୍ତି ନ କରି ଭାବି ଭଲ କରିଚୁ ଭାଇ । ବଡ଼ ଅମଙ୍ଗଳ ହୋଇ-ଥାନ୍ତା ତୋର । ଦେଖିନୁ କମ୍ପିତ ଜଳବଳ ହୋଇ ମଲା ? ନିଜ ପେଟର ପିଲାଟାକୁ ଯେ ମାରିବାକୁ ଯାଉଥିଲା, ନିଜେ ସେ ମରନ୍ତା ନାହିଁ ? ଧର୍ମ କଣ ନାହିଁ ?

ସେଇ ଜଳନ୍ତା ପାଉଁଶ ଭିତରେ ଆଖି ବୁଲାଇ ବୁଲାଇ ବିରକ୍ତ ହୋଇ ଲଗୁ କହିଲା—"ଥାଉ, ଥାଉ, ଅନ୍ୟକୁ ବିଗ୍ଭର କର ନାହିଁ । ମଣିଷ କଣ ମଣିଷକୁ ଠିକ୍ ବୁଝିପାରେ ?"

ଶ୍ରୀ ସଚ୍ଚି ରାଉତରାୟ

# ଧୂଳିଆ ବାବା

ଦେଗାଁର ହନୁମାନ୍‌ଜୀ ପ୍ରତ୍ୟକ୍ଷ ଦେବତା । ସେ ତ କିଛି ଆଜି କାଲିକା କଳିଯୁଗର ଦେବତା ନୁହନ୍ତି—ସତ୍ୟଯୁଗରୁ ବିରାଜୁଛନ୍ତି । ମହନ୍ତ ମହାରାଜଙ୍କ ନାମ ହନୁମାନ ଦାସ—ତାଙ୍କର ବି ସେହିପରି ମହିମା—ବଡ଼ ବଚନସିଦ୍ଧ ପୁରୁଷ ଥିଲେ । ଯାହାକୁ ଯାହା ଆଜ୍ଞା କରୁଥିଲେ, ତୁରନ୍ତ ଫଳି ଯାଉଥିଲା । ତାଙ୍କ ମହିମା କଥା ପୃଥିବୀଯାକ ଜାହିର । ନାଗପୁର ମରହଟ୍ଟା ଫୌଜଦାର ସବୁ କଥା ଶୁଣି ଯାଇ ତାଙ୍କୁ ଦର୍ଶନ କରିବାକୁ ଆଇଲା । ସକାଳଓଳିଆ ମହନ୍ତ ମହାରାଜ ଗୋଟାଏ କାନ୍ଥଡ଼ ଉପରେ ବସି ଗଞ୍ଜେଇ ପିଉଥିଲେ—ଦୂରକୁ ଅନାଇ ଦେଲେ ଯେ ଗୋଟାଏ ଖୁବ୍ ବଡ଼ ଦନ୍ତା ହାତୀ ଉପରେ ଅମାରି କଷା, ତା ଉପରେ ପାଟଛତା ଉଡ଼ୁଛି, ଫୌଜଦାର ତା ଉପରେ ବସି ଆସୁଛନ୍ତି । ମହନ୍ତ ମହାରାଜ ଗାଲି ଏତିକି କହିଲେ, ହୁଁ—ଚେଲ ବାବା କାନ୍ଥଡ଼ା ଚେଲ । ଆଉ କଣ କାନ୍ଥଡ଼ା ରହିପାରେ, ଚାଲିଲା । ତେଣୁ ଆସୁଛି ହାତୀ, ଏଣୁ ଯାଉଛି କାନ୍ଥଡ଼ା, ଅଧବାଟରେ ଭେଟାଭେଟି । ଫୌଜଦାର ଯିମିତ ଅନାଇ ଦେଉଛି, ଆଉ କଣ ହାତୀରେ ବସି ପାରେ—ଖପ୍ କରି ହାତୀରୁ ଡେଇଁପଡ଼ି ଲମ୍ ଦମ୍ ଗୋଡ଼ତଳେ ପଡ଼ିଗଲା ।

ମହନ୍ତ ମହାରାଜ କଲ୍ୟାଣ କଲେ,. ଜୀତେ-ରହୋ ଜୀତେ-ରହୋ
ବଛା, ଜଠ—ଜଠ—। ଫୌଜଦାର ଯିମିତ ଉଠିଛନ୍ତି—ସାଙ୍ଗେ
ସାଙ୍ଗେ ତମ୍ବା ପାଟିଆରେ ବାଉ ବାଡ଼ି ଜମି ଅଜର ସନଦ
କରିଦେଲା । ଏହୁ ମହନ୍ତ ଖାଦ୍ରେ ବସିଥିଲେ—ବାରଣ ବାର
ବରଷ ବାର ମାସ ବାର ଦନ । ସେ ତ ଥିଲେ ଇଚ୍ଛାମୟୁ
ପୁରୁଷ, ଅଜ ପୃଥିବୀରେ ରହିବାକୁ ମନ ଗଲା ନାହିଁ—
ଅଯୋଧ୍ୟାକୁ ଖବର ଗଲା । ହନୁମାନ ଗାଦରୁ ଜଣେ ଚେଲା
ଅସିଲେ, ଏହାଙ୍କ ହାତରେ ଗାଦ ଦେଇ ସ୍ୱର୍ଗକୁ ଗୃଲିଗଲେ । ଏ
ଚେଲାଙ୍କ ନାମ୍ ମର୍କଟ ଦାସ ମହନ୍ତ ମହାରାଜ । ଗାଦର ମହମା—
ଏ ମହନ୍ତ ବି ସେହିପରି । ଏହାଙ୍କ ସମୟରେ ପଡ଼ଲା ଫିରଙ୍ଗି
ଅମଲ ଜାରି । କଟକ ସାହେବ କହିଲା—କ୍ୟା ହିନ୍ଦୁ ଫକୀରଟା
ଖଜଣା ନ ଦେଇ କେଉଁ ଏତେ ଗୁଡ଼ାଏ ଜମି ମୁହାଳିଆ ଖାଏଗା ?
ବୋଲାଓ ଜଲ୍ଦି, ହାମ୍ ଦେଖେଗା । ପରୁଆନା ପାଇଁ ମହନ୍ତ
ଘୋଡ଼ାରେ ଚଢ଼ି ବାହାରିଲେ । ଅଗରେ ବାନା ବୈରଖ ଉଡ଼ୁଛି,
ହରିବୋଲ ପଡ଼ୁଛି, ଝାଞ୍ଜ ଲଗିଛି, ଯାଇ ବଙ୍କେ ହୋଇଗଲେ
ମହାନଦୀ କୂଳରେ । ଭାଦ୍ରବ ମାସିଆ ଦନ—ମହାନଦୀ ଏକୂଳ
ସେକୂଳ ଖାଉଛି, ବର୍ଷା ତୋଫାନ ବୋଲେ ମୁହିଁ—ନାଉରି କହିଲା,
ନାଅ ଫିଟାଇବି ନାହିଁ । ପାରିହେଉଛନ୍ତି କିମିତ ? ମହନ୍ତ ମହାରାଜ
ଆଜ୍ଞା କଲେ, ପରବା ନାହିଁ । ଭାଖରେ ଯେ ବାଘ ଛାଲ ଥିଲା,
ପାଣିରେ ପାରି ଦେଲେ— ଅପେ ଝାଙ୍କେ ହୋଇଗଲେ, ଅଧିକାରୀ
ଟହଲିଆ ସୁଅର ଚଳିବା ଭଳି ଲୋକଙ୍କୁ ପାଖରେ ବସାଇ
ନେଲେ । ଜଣେ ଛତିଆ ମହନ୍ତଙ୍କ ମୁଣ୍ଡ ଉପରେ ପାଟଛତା
ଟେକିଥାଏ, ଦୁଇଜଣ ବାହିଅ ଛାଲ ବାହି ଯାଉଥାନ୍ତି । ଏଣେ

ମହାନଦୀ ଅର କୂଳରେ ସାହେବ ବାଙ୍ଗଟି ପ୍ରକାର ବସିଥିଲେ ।
ଦୁରବୀନରେ ଚାହିଁ ଦେଲେ, ପାଖ ଲୋକଙ୍କୁ ପଚାରିଲେ, ଏ କ୍ୟା ?
ଲୋକେ କହିଲେ, ହଜୁର୍ ଫକୀର ବଜେ ହୋଇ ଅଛନ୍ତି ।
ସାହେବ ଅଜ କଣ ମୌଜରେ ବସିବେ—ନଈକୂଳକୁ ଧାଇଁ-
ଅଇଲେ, ମୁଣ୍ଡରୁ ଟୋପି ତଳେ ରଖି ତିନି ସଲାମ କଲେ—
କହିଲେ—ହାଲେ ଫକୀର, ତୁମାରି ଜମିନ ବାହାଲ । ଏ ମହନ୍ତ
ଦେଢ଼ହଜାର ବର୍ଷ ଗାଦରେ ବସିଥିଲେ । ତାଙ୍କ ଉତ୍ତାରେ ଗାଦରେ
ବସିଲେ କମ୍ବୁବାନ୍ ମହନ୍ତ ମହାରାଜ । ମଠର ପଛପଟରେ ଯେଉଁ
ଦପାଙ୍କ ଉଠିଅ ବୁଢ଼ା ସାହାଡ଼ା ଗଛ ଦେଖୁଛ, ଏଇଟା କଣ ଜାଣ ?
ମହନ୍ତ ଦିନେ ସାହାଡ଼ା ଦାନ୍ତକାଠିରେ ଦାନ୍ତ ଘଷୁଥିଲେ—କାଠି-
ଖଣ୍ଡ ଦାନ୍ତରେ ଚିରି କଣ୍ଠୁ ଛେଲିପକାଇ ଦୁଇଖଣ୍ଡ କାଠି ଯୋଡ଼ି
ମାଟିରେ ପୋତି ଦେଲେ, ତା ଉପରେ ଛିଟିକି ଟୋପାଏ ପାଣି
ପକାଇଛନ୍ତି, ଫିମିତି ଗଛେଇଗଲା । ଏଇଟା ସେଇ ଗଛ ।
ବର୍ତ୍ତିମାନ ମହନ୍ତଙ୍କ ନାମ ବାନର ଦାସ ମହନ୍ତ ମହାରାଜ । ଏପରି
ପୁରୁଷ କାହିଁ ଦେଖା ନାହିଁ—ନ ଥିବ । ପଞ୍ଚହତା ମରଦ—ଗାଲ
୯୦ ଗୁଡିଏ ଲଗିଯାଇଛି; ଚେକ ଦିଶେ ନାହିଁ । ବାହୁ ଅଜ
ଲୋକଙ୍କ ଜଙ୍ଘ ପରି ମୋଟା, ପେଟଟି ଯୋଟିଏ ଦଶ
ନୌତିଅ ଢୁମ । ଅଜଣା ଲୋକେ ଦେଖି କହିବେ, ମହନ୍ତ
ଲଙ୍ଗଳା । ନାହିଁ ନାହିଁ ଗୁଖଣ୍ଡେ ଚୌଡ଼ା ଦେଢ଼ ହାତ
ଲମ୍ବ ଖଣ୍ଡେ କନା କୌପୀନ ମାରିଥାଅନ୍ତି । ଜଙ୍ଘକୁ ତ୍ରୁଙ୍ଗ ଲାଗି
ଯାଇଛି—ଚପେଟଟି ଝୁଲିପଡ଼ିଛି, କୌପୀନ ଦିଶେ ନାହିଁ । ଏ
ମହନ୍ତଙ୍କର ବି ମହିମା ଅପାର । ମନ୍ଦିରରେ ଏତେ ଖଟ ପଲଙ୍କ
କାହିଁରେ ଶୋଇବେ ନାହିଁ; ସବୁବେଳେ ଧୂଳିରେ ଗଡ଼ୁଥାନ୍ତି ।

ଦେହଯାକ ଧୂଳିଧୂସର । ସ୍ନାନ କେବେ କରନ୍ତି ନାହିଁ, ପାଣି ଛୁଅନ୍ତି ନାହିଁ—ଏଥିପାଇଁ ଲୋକମାନେ ମହନ୍ତ ମହାରାଜାଙ୍କୁ ଧୂଳିଆ ବାବା ବୋଲି ଡାକନ୍ତି । ମଠରେ ଏତେ ଧନ ଦୌଲତ; ଏତେ ପିଠା ଖଜା—କିଛି ଛୁଇଁବେ ନାହିଁ—ଦଶ ସେର କ୍ଷୀରରୁ ଦୁଧ ଅଜଟି ଅଜଟି ପାଞ୍ଚ ସେର ରହିବ, ଅଳତା ଫଡ଼ା ପରି ଉପରେ ସର ପଡ଼ିବ—ଦୀପହର ଧୂପରେ ଠାକୁରଙ୍କ ଭୋଗରେ ଭୋଗ ଲଗେ—ମହନ୍ତ ମହାରାଜ ସେତିକି ସେବା କରନ୍ତି । ଆଉ ତୋଳାଏ ଅଫିମ, ପାଏ ଗଞ୍ଜେଇ ଖଞ୍ଜା । ଦିନରାତି ଗଞ୍ଜେଇ ଚିଲମ ହାତରୁ ଛୁଟେଣି ନ ଥାଏ । ଆଖି ଯୋଡ଼ିକ ସାନ ସାନ ସିନ୍ଦୁରବିନ୍ଦୁ ପରି ଲାଲ । ସବୁବେଳେ ମିଞ୍ଜି ମିଞ୍ଜି କରି ଗୁହାନ୍ତି । ତାଙ୍କ ଗଞ୍ଜେଇ ଚିଲମଟା ହାତେ ଲମ୍ବ । ଦଶ ପନ୍ଦର ଜଣ ଭକତ-ଚେଲା ସବୁବେଳେ ବେଢ଼ି ବସିଥାନ୍ତି । ଗଞ୍ଜେଇ ଟିପା ଢାମ ପାଞ୍ଚ ଛ ଜଣଙ୍କ ହାତରେ ଲାଗିଥାଏ—ମଠରୁ ପ୍ରସାଦ ସେବା କରି ସବୁବେଳେ ଏମାନେ ପାଖରେ ହାଜର ।

ଆଗ ଆଗ ମହନ୍ତ ମହାରାଜମାନଙ୍କ ମହିମା କଥା ଦେଶ ଲୋକଙ୍କୁ ଜଣା । ପୁଣି ସେ ସବୁ କଥା ଭୂର୍ଜପତ୍ରରେ ଦେବନାଗରୀ ଅକ୍ଷରରେ ରକ୍ତଚନ୍ଦନରେ ଲେଖା ହୋଇ ଦେଉଳ ସିଂହାସନ ତଳେ ଅଛି । ଏ ଧୂଳିଆ ବାବା ସେ ସବୁ ପଢ଼ି ଅତି ବିଶ୍ୱାସୀ ଭକ୍ତମାନଙ୍କ ପାଖରେ ଗୋପନରେ କହନ୍ତି । କେହି କେହି ଅବିଶ୍ୱାସୀ ଭକ୍ତ ଲୋକଙ୍କ ପାଖରେ ପ୍ରକାଶ କରି ପକାଏ ।

ଧୂଳିଆ ବାବା ସବୁଦିନେ ଚେଲାମାନଙ୍କ ଆଗରେ କହନ୍ତି—ଏହି ପୁରୀରେ ଯେ ଜଗନ୍ନାଥ ଦେଉଳ ଦେଖୁଛ, ତା ଆର ହେଲା ବାଦ

ପ୍ରତିଷ୍ଠାକୁ ଅଯୋଧ୍ୟାରୁ ହଜାରେ ଆଠ ମୂରତି ସାଧୁ ମହନ୍ତ ଭୋଜି ଖାଇବାକୁ ଆସିଥିଲେ—ଏ ବି ସେମାନଙ୍କ ମଧ୍ୟରେ ଆସିଥିଲେ, ଚେଲାମାନଙ୍କ ଭକ୍ତି ଏଡ଼ି ନ ପାରି ରହି ଯାଇଛନ୍ତି*—ଆଜି ଏ ମିରୁଆ ଦେଶଟା ଭଲ ଲାଗୁ ନାହିଁ, ଅଯୋଧ୍ୟା ହନୁମାନ ଗାଦିକୁ ଫେରିଯିବେ। ପ୍ରସାଦସେବା ଲାଗି ଚେଲାମାନେ ଗୋଡ଼ତଳେ ପଡ଼ି ଗଡ଼ନ୍ତି। ସେମାନଙ୍କ ଉପରେ କୃପା କରି ଧୂଳିଆ ବାବା ରହି ଯାଇଛନ୍ତି। ଏପରି ଘଟଣା ଶହକୁ ଶହ ଥର ହୋଇଗଲାଣି।

ମହନ୍ତଙ୍କର ଧନ ଦୌଲତ ଅପାପୀ ଗାଈ ମଇଁଷି ପଲକୁ ପଲ, ଧାନ ଟଙ୍କାର ସୀମା ନାହିଁ। ଆୟ ଢେର। ଆୟ ମଧ୍ୟରୁ ଗୋଟିଏ ବିଶେଷ ଆୟ ଏହି—ଦେଶ ମଧ୍ୟରେ ମାଲି ମକଦ୍ଦମା ଉପସ୍ଥିତ ହେଲେ ମୁଦେଇ ମୁଦାଲା ଦୁଇ ପକ୍ଷ ପ୍ରଭୁଙ୍କ ପାଖରେ ମନାସି ଯାନ୍ତି—ମାମଲା ଜିତା ହେଲେ କିଏ କେତେ ଟଙ୍କା ଦେବେ, ପାଞ୍ଜିଆ ଲେଖି ରଖେ। ଯାହାର ମାମଲା ଜିତା ହୁଏ, ଜଣେ ସାଧୁହିଁ ପଠାଇ ତାଠାରୁ ଟଙ୍କା ଅସୁଲ କରାଯାଏ।

ରାମ ସାଉ ଶାମ ସାଉଁ ଦୁଇ ଭାଇ। ଭାଇଭାଗ ବଣ୍ଟା ଅଂଶ ପାଇଁ କଟକ ଅଦାଲତରେ ମକଦ୍ଦମା ଦାଏର ହେଲା। ରାମ ସାହୁ ପ୍ରଭୁଙ୍କଠାରେ ମନାସି ଗଲା—ମାମଲା ଜିତା ହେଲେ କେତେ ଟଙ୍କା ଦେବ, ପାଞ୍ଜିଆ ପାଖରେ ଲେଖି ଦେଇଗଲା। ଶାମ ସାଉ ଅସେ ନାହିଁ। ବୁଝ—ବୁଝ, ଶାମା କିଆଁ ଆଇଲା ନାହିଁ। ଜଣେ ଚେଲା

---

* ଏହିଭଳି ଜଣେ ମହନ୍ତ ଲେଖକର ପ୍ରତିବାସୀ ଥିଲେ। ଲେଖକ ସେହି ମହନ୍ତଙ୍କ ଶ୍ରୀମୁଖରୁ ତାହାଙ୍କ ବପୂର୍ବ ସମ୍ବନ୍ଧରେ ଏଇ କଥା ଶୁଣିଛୁ।

ବୁଝି ଆସି ଜଣାଇଲା, "ପ୍ରଭୁ ! କିଣ କହିବି—କହିବାକୁ ଡର ମାଡୁଛି ଆଜ୍ଞା—ଶାପାଗ୍ର ଏଡ଼େ ବହପ—ପାଞ୍ଚ ଜଣଙ୍କ ଆଗରେ ଖାପ୍ ଫିଟେଇ କହିଲା—କଲିକାଳରେ ମହନ୍ତଙ୍କ କରାମତ କାହିଁ ଯେ ମୁଁ ମନାସିବାକୁ ଯିବି ?" ମହନ୍ତ ଯେତେବେଳେ ଗଞ୍ଜେଇ ଖାଉଥିଲେ ରାଗରେ ଖୁବ୍ ବଳରେ ଚିଲମଟା ଭିଡ଼ି ନେଲେ—ଦପ୍ କରି ଜଳି ଉଠିଲା । ମହନ୍ତ ଅଳ୍ପ ଅଳ୍ପ ଭକ୍ ଭକ୍ କରି ପାଟିରୁ ଧୂଆଁ ଛାଡ଼ୁଥାନ୍ତି—କଥାଟା ଚିପି ଚିପି କହିଲେ—"ଦେଖ ଚେଲାମାନେ, ଆମେ ହୁକୁମ କରୁଚୁଁ, ଏହି ଚିଲମ ନଅଁ କଥା କହିବ ।" ଚେଲାମାନଙ୍କର ତ ଆନନ୍ଦର ସୀମା ନାହିଁ । ସେମାନଙ୍କର ଦୃଢ଼ ବିଶ୍ୱାସ ମହନ୍ତଙ୍କ ଆଜ୍ଞା ମେଣ୍ଟଣ ହେବାର ନୁହେଁ । ସେହି ଦିନ ମଧ୍ୟରେ ଦେଶଟାଯାକ ହାଟ ହୋଇଗଲା, ଧୂଲିଆ ବାବାଙ୍କୁ ପ୍ରଭୁଙ୍କର ସ୍ୱପ୍ନ ହୋଇଛି, ସେ ସିଦ୍ଧ ପୁରୁଷ ହୋଇଗଲେଣି—ତାଙ୍କ ଗଞ୍ଜେଇ ଚିଲମ କଥା କହିବ । ଥୋଡ଼ିକେ ଚେଲା ପ୍ରକାଶ କଲେ—ନାହିଁ ନାହିଁ—ଚିଲମ ନୁହେଁ, ଚିଲମ ନଅଁ କଥା କହୁଛନ୍ତି—ଦଶ ଜଣଙ୍କୁ ଆଜ୍ଞା ହେଲା—ସେ, ନିଜେ ଶୁଣି ଆସିଲା । ଆଉ ଯାଏ କାହିଁ—ତହିଁ ଆର ଦିନ ସକାଳୁ ସଞ୍ଜଯାଏ ଶହକୁ ଶହ ଲୋକ ଧାଁଇଁଛନ୍ତି । କାହାକୁ ବେମାରୀ ଛାଡୁ ନାହିଁ—କାହାର ବଳଦ ହଜିଛି, ମିଳୁ ନାହିଁ—କାହାର ମାମଲା ଦାଏର ଅଛି, ଡିକ୍ରୀ ହେଉ । ତେର ତେର ଭଳିଆ ପାପୁଜା ପଠାଇଛନ୍ତି, ସେମାନଙ୍କର ପୁଅ ହେଉ ନାହିଁ—ଚିଲମପ୍ରଭୁ ବର ଦେଉନ୍ତୁ । ଲୋକେ ପାଦପୂଜା ଟଙ୍କା ଅଧୁଲି ସୁକି ମହନ୍ତଙ୍କ ପାଦତଳେ ଦେଇ ଅଧିଆ ପଡ଼ିଛନ୍ତି ।

ମହନ୍ତ ମହାରାଜ ଆଜ୍ଞା କଲେ, "ଉଠ ଉଠ ବାବାମାନେ ! ଆମେ କିଛି କହିବୁ ନାହିଁ—ଏହି ଯେ ଆମ ଗଞ୍ଜେଇ ଚିଲମରେ

ଅଗ୍ନି ଦେଖୁଛ, ସେଥିରେ ଧୂନି ଥାପନା ହେବ, ସେହି ଧୂନିରେ ଅଗ୍ନି ଦେବତା ବାହେ ହେବେ, ସମସ୍ତଙ୍କ ଗୁହାରି ଶୁଣି ବର ଦେବେ । ଅସନ୍ତା ଅଗିରାପୁନେଇଁ ଦିନ ଅଗ୍ନିଦେବତା ସ୍ୱର୍ଗରୁ ବାହେ ହୋଇ ପୃଥିବୀରେ ଭ୍ରମଣ କରିବେ । ଆମଙ୍କୁ ସ୍ୱପ୍ନରେ ଆଜ୍ଞା କରୁଛନ୍ତି, ଆମେ ଧୂନି ଥାପି ତାଙ୍କୁ ବାହେ କରାଇ ରଖିବୁଁ, ଯାହାର ଯାହା ଗୁହାରି-ଥିବ, ପୂଜା ଦେଇ ଜଣାଇଲେ ତତ୍‌କ୍ଷଣାତ୍ ବର ମିଳିଯିବ ।" ପୂଜାର ବିଧାନ ସମସ୍ତଙ୍କୁ ଶୁଣାଇ ଦେଲେ—ଧୂନିରେ ଶଏ ଆଠ ଅଦ୍ଭୁତ ଦିଆଯିବ—ସେଥିସଙ୍ଗେ ଖଣ୍ଡିଏ ନବବସ୍ତ୍ର, ପାଞ୍ଚପା ଘିଅ, ପଞ୍ଚବର୍ଣ୍ଣି ଭୋଗ—ପଞ୍ଚବର୍ଣ୍ଣି ପୁଷ୍ପ । ଗାଦିପୂଜା ଦକ୍ଷିଣା ଯାହାର ଯାହା ଶକ୍ୟ, କିନ୍ତୁ ପାଞ୍ଚ ସୁକାରୁ ଊଣା ନୁହେଁ ।

ଅଗିରାପୁର୍ଣ୍ଣିମା ଅଧରାତଠାରୁ ଧୂନିପୂଜା ଆରମ୍ଭ ହେଲା—ମହନ୍ତ ମହାରାଜ ଅଦ୍ଭୁତ ଦେବାରୁ ଅଗ୍ନିଦେବତା ବାହେ ହୋଇଗଲେ, ଧୂ—ଧୂ—ହୋଇ ଜଳୁଛନ୍ତି । ଯାହାର ଯାହା ପ୍ରାର୍ଥନା, ହାତ ଯୋଡ଼ି ଜଣାଇଲେ, ଧୂନି ଭିତରୁ ଅଗ୍ନିଦେବତା ଗମ୍ଭୀର ସ୍ୱରରେ ହୁଁ—ନାଁ—ହେବ—ଏହିପରି ଆଜ୍ଞା କରୁଛନ୍ତି । ପ୍ରତ୍ୟକ୍ଷରେ ଅବିଶ୍ୱାସ କିଏ ? ଲୋକମାନେ ଶୁଣି ତାଟକା—ଭକ୍ତିରେ ଭୂଇଁରେ ପଡ଼ି ଗଡ଼ି ଯାଉଛନ୍ତି । ହରିଧ୍ୱନିରେ ମଠ ଉଛୁଳି ପଡ଼ୁଛି ।

ଶାମ ସାଇ ସବୁ କଥା ଶୁଣିଲା, ଘରମଧ୍ୟରେ ତଳା ପାରି ମୁଣ୍ଡ ବାଡ଼େଇ ହେଉଛି । ଲୋକମାନେ ଧୂନିପୂଜା କରି ବର ନେଇ ଯାଉଛନ୍ତି—ରାମା ଭାଇ ବି ପୂଜା ଦେଇ ବର ପାଇବ, ମୋହର ସର୍ବନାଶ ହେବ—ଇଜମାଲି ଧନ ଊଣା ନୁହେଁ, ଲକ୍ଷକରୁ ବଳି ପଡ଼ିବ—ସବୁ ରାମା ଭାଇ ଘେନିଯିବ । ମହନ୍ତ ମହାରାଜ ଖପା

ହୋଇ ଆଜ୍ଞା କରିଛନ୍ତି—ଅଚ୍ଛା, ସେ ତେଲ ଟୋକାକୁ ଦେଖିବୁଁ ।
ଏ କଥା ଶୁଣିଲାବେଳୁଁ ଶାମାର ଫାଙ୍କାଣି ଛିଣ୍ଡିଲାଣି । କଣ କରିବ,
ଆଉଁ ଆଉଁ ଗୋଟାଏ ବୁଦ୍ଧି ବାଣିଗଲା । ମହନ୍ତ ମହାପ୍ରଭୁଙ୍କ
ଗଞ୍ଜେଇପ୍ରସାଦ ସେବକମାନଙ୍କୁ ଯାଇ ଧରିଲା । କାହାକୁ ଦଶ,
କାହାକୁ ପାଞ୍ଚ ଦେଇ ସମସ୍ତଙ୍କ ଗୋଡ଼ତଳେ ପଡ଼ିଲା—ସମସ୍ତେ
ଅଭୟ ଦେଇ ମହନ୍ତଙ୍କ ଗୋଡ଼ତଳେ ପଡ଼ିବାକୁ ଉପଦେଶ
ଦେଲେ ।

ବେଳ ଛଅ ଘଡ଼ି—ସେବକମାନେ ବେଢ଼ି ବସିଛନ୍ତି, ମହନ୍ତ
ଧୁଳିଟାରେ ବସି ଗଞ୍ଜେଇ ଭିଡ଼ୁଛନ୍ତି, ଜାଗାଟା ଧୂଆଁମୟ । ଶାମ ଗୁଡ଼
ଦାଉଁ ଦାଉଁ ପଡ଼ୁଛି, ଡର ଡର ଯାଇ ମୁଠାଏ ଟଙ୍କା ପାଦପୂଜାପାଇଁ
ଥୁଣି କରି ମହନ୍ତଙ୍କ ପାଦୁକତଳକୁ ଫୋପାଡ଼ି ଦେଇ ଲମ୍ବ ଲମ୍ବ
ଗୋଡ଼ତଳେ ପଡ଼ିଗଲା । "ପ୍ରଭୁ ! ମୁଁ ପିଲା—ମୁଁ ମହାପାପୀ, ମୋ
ଅପରାଧ କ୍ଷମା କରନ୍ତୁ ।" ମହନ୍ତ ଆଖି ବୁଜି ବସି ଗଞ୍ଜେଇ ଭିଡ଼ୁଛନ୍ତି,
କିଛି ଆଜ୍ଞା ହେଲା ନାହିଁ । ସମସ୍ତ ସେବକ ଏକାବେଳକେ ମହନ୍ତ
ମହାରାଜଙ୍କ ଗୋଡ଼ତଳେ ପଡ଼ି ପ୍ରାର୍ଥନା କଲେ—"ହେ ମହାପ୍ରଭୁ !
ଅମ୍ଭେମାନେ ମହାପାପିଷ୍ଠ, ଅପରାଧୀ—ପ୍ରଭୁ କ୍ଷମା ନ କଲେ ଆଉ
କିଏ ଜଗତରେ ଅଛି ?" ଦୟାମୟ ପ୍ରଭୁ ଏକାବେଳକେ ଆଜ୍ଞା
କଲେ—"ଯାଓ ବେଟା, ପୂଜା ଲେଅଓ ।" ଶାମ ସାଜର ଆନନ୍ଦର
ସୀମା ନାହିଁ—ପୂଜା ଅୟୋଜନରେ ଧାଇଁଛି । ସେତେ ମହାଜନ,
ପୂଜା ଅୟୋଜନ ସେତିକି ପରି—ଢିଅ ଘାଞ୍ଚି ଜାଗାରେ ପାଞ୍ଚ ସେର,
ଆଉ ଆଉ ସରଞ୍ଜାମ ତା ମାପିକେ । ସମସ୍ତେ ଖଣ୍ଡେ ଖଣ୍ଡେ ସୂତା
ଶାଢ଼ୀ ଅଦ୍ଭୁତ ଦଅନ୍ତି—ଶାମ ସାଜ କୁମ୍ଭକର୍ଣ୍ଣୀ କନାର ସଜା ଜରି
ମୁହଁଣ୍ଡା ଖଣ୍ଡେ ବରମପୁରୀ ପାଟ ଶାଢ଼ୀ ଅଦ୍ଭୁତ ଦେବାଲାଗି ଆଣିଛି ।
ଶାମ ସାଜର ଭାରି ବଡ଼ ପୂଜା ହେବ । ଗାଁରେ ସେ ଦାଉଡ଼ିଭାଇ ବଡ଼

ଝାଣୁଥ ମହାଜନ । ଅଗ୍ନିଦେବ ଠାକୁଙ୍କ ବର ଦେବେଁ ଶୁଣିବାପାଇଁ ଅଗ ପାଖ ପାଞ୍ଚ ଖଣ୍ଡ ଗାଁରୁ ମଣିଷ ଧାଇଁଛନ୍ତି, ଉଣା ଅଧିକ ପାଞ୍ଚ ଶହ ଲୋକ ଜମା ହୋଇ ଗଲେଣି—ବେଢ଼ା ଭିତରେ ଜାଗା ନାହିଁ ।

ମନ୍ଦର ବେଢ଼ା ପାଚେରିଲଗା ଧାଡ଼ିଏ ଘର ଅଛି, ଗୋଟାଏ ଘର ମେଳା ମଣ୍ଡପରେ ପିଠା ଖଜା ତିଆରି ହୁଏ—ତା ପାଖଟା ସର ଘର । ସେହି ପିଠା ତିଆରି ଘରେ ଧୁନି ଥାପନା ହୋଇଛନ୍ତି । ସତ ଅନ୍ଦାଜ ଛ ଘଣ୍ଟା ସମୟରେ ମହନ୍ତ ମହାରାଜ ମନ୍ଦର ପାଖ ଗମ୍ଭୀରରୁ ବାହାରିଲେ । ଆଜି ତାଙ୍କ ମନରେ ଭାରି ଆନନ୍ଦ—ଅନେକ ଟଙ୍କା ରୋଜଗାରର ମାମଲା । ଟୋକାଏ ଅଣ୍ଟା ଜଗରେ ସଞ୍ଜବେଳେ ଅଧୁର ଚୋଳାଏ ପକାଇଛନ୍ତି । ଗଞ୍ଜେଇ ବି ବେଶିକରି ଭରିଛନ୍ତି । ଚାଲିବା ବେଳେ ଗୋଡ଼ ଟଳି ଯାଉଛି— ଦୁଇ ଜଣ ଚେଲା ଧରାଧରି କରି ନେଉଛନ୍ତି । ମହନ୍ତ ବାବାଙ୍କ ଦର୍ଶନ କରି ସମସ୍ତ ଦେଖଣାହାରି ହରିବୋଲ ପକାଇ ଗୋଡ଼ତଳେ ପଡ଼ିଗଲେ । ପୂଜା ଆରମ୍ଭ ହେଲା, ପାଞ୍ଚସେର ଘିଅ ଆହୁତି, ଖୁବ୍ ମୋଟା ମୋଟା ତେର ଗୁଣ୍ଡାଏ କାଠ ଧୁନିରେ ଲଦା ହେଲେ । ଅହୁତି ପାଇ ରୁଧ ହାତ ଭଳି ଶିଖା ଟେକି ନିଆଁ ଧୁ-ଧୁ ଜଳୁଛି । ଘର ଭିତରେ ମହନ୍ତ ଏକାକୀ— ପ୍ରଭୁଙ୍କର ସେହିପରି ମହିମା—ନୋହିଲେ ନିଆଁ ତେଜରେ ଅନ୍ୟ କିଏ ସେ ଘରେ ପଶି ପାରିବ ? ଶାମ ସାଙ୍ଗେ ବେଳକରେ ପଠଭା ପକାଇ ହାତ ଯୋଡ଼ି ଦୁଆରବନ୍ଧ ବାହାରେ ଛିଡ଼ା ହୋଇ ଧୁନି ମହାପ୍ରଭୁଙ୍କୁ ଜଣାଇ ପ୍ରାର୍ଥନା କରୁଛି । ମହନ୍ତ ଆଖି ବୁଜି ଖୁବ୍ ପାଟି କରି ପ୍ରାର୍ଥନା କଲେ, ଧୁନି କି । ଶାମା ବେଟାକୁ ବର ଦିଅ— ବରଂ ଦିଅ—ବର ଦିଅ, ତା ମାମଲା ଫତେ ହେଉ । ଧୁନି ଜଳୁଛି

ଜବାବ ଦେଲେ ନାହିଁ । ମହନ୍ତ ଅପଣାର କରାମତି ଲୋକମାନଙ୍କୁ ଦେଖାଇବା ପାଇଁ ଛିଡ଼ା ହୋଇଗଲେ, ହାତରେ ଯେଉଁ ଦଶ ସେରିଆ ଲୁହା ଚିମୁଟା ଥିଲା, ଖୁବ୍ ବଳରେ ପାହାରେ ବାଡ଼େଇଦେଲେ, ଭୁଷ୍ କରି ଭାରି ଗୋଟାଏ ଶବ୍ଦ ହେଲା । ଶାମ ସାଉ ଚମକିପଡ଼ି ଅନାଇଲା—ଘର ଭିତରେ ଗୁଡ଼ାଏ ଗମ୍ଭୀର ଗୋଟାଏ ଗାତ— ଗାତ ଅଧାଅଧି ପୂରି ନିଆଁ ଜଳୁଛି—ତା ମଧ୍ୟରେ ଦୁଇଜଣ ଲୋକ ଭାରି ଗୋଟାଏ ଧରାପରା ଲାଗିଛନ୍ତି । ଶାମ ପ୍ରଥମରେ କିଛି ବୁଝି ପାରିଲା ନାହିଁ—ମୁହୂର୍ତ୍ତିକ ବାଦ୍ ଭକ୍ତିବଳରେ ବୁଝିଗଲା—ଧୂନି ଦେବତା ଦେହ ଧରି ବାସ୍ତବମାନ ହୋଇ ଗଲେଣି, ମହନ୍ତଙ୍କ ସଙ୍ଗରେ କୋଳାକୋଳି କରୁଛନ୍ତି— ତାହାର ଭାଗ୍ୟ ଫିଟିଲା, ବର ମିଳିଯିବ । ମୁହୂର୍ତ୍ତିକ ମଧ୍ୟରେ ଏତେ କଥା ବୁଝି ନେଲା । ଖୁବ୍ ପାଟିକରି ହରିବୋଲ ପକାଇ କହିଲା, ଧୂନି ଦେବତା ରୂପ ଧରି ବାଜେ ହେଲେଣି । ଯେତେ ଲୋକ ଥିଲେ, ଆନନ୍ଦରେ ହରିବୋଲ ପକାଉଛନ୍ତି, ମନ୍ଦିରରୁ ଘଣ୍ଟ କାହାଳି ଝାଞ୍ଜ ବାଜୁଛି, ସମୁଦ୍ର ଗର୍ଜ୍ଜନ ପରି ଶବ୍ଦ ଉଠୁଛି । ଅଗ୍ନି ଦେବତାଙ୍କ ଦର୍ଶନ କରିବାକୁ ଲୋକେ ଧାଇଁଲେ । ଗୋଟିଏ ବୋଲି ଦୁଆର, ଘର ଭିତରଟା ଧୂଆଁରେ ପୂରିଛି, ଦୁଆର ପାଖରେ ଧରାପରା ହୋଇ କେତେଲୋକ ମଡ଼ା ଦଳାରେ ଅଣ୍ଟୁ ଗଣ୍ଠି ଛୁଞ୍ଚ ଘାଇଲା ହୋଇଗଲେଣି ।

ପହରେ ବିତି ଗଲାଣି, ଲୋକେ ନାଚ କୁଦ ହରିବୋଲ ଦେଇ ହାଲିଆ ହୋଇ ପଡ଼ିଲେଣି । ଏ କଣ ? ମଡ଼ା ପୋଡ଼ାର ଉତ୍କଟ ଗନ୍ଧ, ଲୋକେ ନାକରେ ଲୁଗା ଜାକୁଛନ୍ତି । କେତେଜଣ ଜଣା ଶୁଣା ଲୋକ ଦୁଆର ପାଖକୁ ଯାଇ ଭଲ କରି ଅନାଇଲେ— ଅରେ ମହନ୍ତ ମହାରାଜ ପୋଡ଼ି ମଲେଣିରେ । ବାଜେ ଲୋକ

ଲୁଟିଲେ, ଅଗ୍ନି ଦେବତା ବଳେ ହୋଇ ମହନ୍ତ ବାବାଙ୍କୁ ଖାଇ ଗଲେଣି—ଡାଳେ ଧାଇଁ ଆସି ଆଜ ସମସ୍ତଙ୍କୁ 'ଖାଇଯିବେ—ପଳା—ପଳା—ପଳା ! ପଡ଼ି ଉଠି ଗୋଟାକ ଉପରେ ଗୋଟାଏ ପଡ଼ି ଧାଇଁଛନ୍ତି । ଶେଷକୁ ମନ୍ଦିରର ପୂଜାହାରୀ ଟହଲିଆ ଗୁଣ୍ଡର-ମାନେ ବି ଛୁଞ୍ଚ ପଳାଇଲେଣି । ଦଣ୍ଡକ ମଧ୍ୟରେ ଏତେ ମନ୍ଦିରଟା ନିଶୂନ । ଖାଲି ଧୂନିଘରୁ ପଡ଼୍ ପଡ଼୍ ଶବ୍ଦ ଶୁଭୁଛି, ଦୁର୍ଗନ୍ଧ ବାହାରୁଛି ।

ଦେଗାଁ ପାଖରୁ ଗୋପାଳପୁର ସରକାରୀ ଥାନା ପୂରା ଅଢ଼େଇ କୋଶ ବାଟ । ସକାଳୁ ସକାଳୁ ସେଠାରେ ଖବର ପହଞ୍ଚିଗଲା । ଦାରୋଗା ସାହେବ ପାଞ୍ଚ ଛ ଜଣ ବର୍କନ୍ଦାଜ, ଆଠ ଦଶ ଜଣ ଚୌକିଦାର ଧରି ଧାଇଁଲେ । (ଚୋର ଧନ ଗଲା କଥା, ତେଣେତ-ବେଳେ କନଷ୍ଟବଳ ନ ଥିଲେ । ) ଦାରୋଗା ପହଞ୍ଚି ଦେଖିଲେ, ମନ୍ଦିର ତ ମନ୍ଦିର, ଗାଁଗୋଟାକରେ ଜଣେ ମଣିଷ ବି ନାହିଁ, ସମସ୍ତଙ୍କ ଘରେ ତାଟି କବାଟ ବନ୍ଦ । ଚଉକିଆମାନେ ବହୁତ ଡକାହକା କରିବାରେ ଭିତରୁ ମାଇକିନିଆମାନେ ଜବାବ ଦେଲେ—ପୁରୁଷ କେହି ଘରେ ନାହିଁ—କେହି ଯାଇଛନ୍ତି ଗୋରୁ ଖୋଜି—କେହି ଯାଇଛନ୍ତି କୁଣିଆ ଘର—କେହି ଜାତିଆଣ ଭୋଜି ଖାଇ—ଚୋର ଲେଖ ଯାଇଛନ୍ତି କଟକ ମାମଲାରେ । ବହୁତ ଖୋଜ ତଲାସରେ ମନ୍ଦିର ପୂଜାହାରୀ ଆଉ କେତେଜଣ ଗୁଣ୍ଡର ବାହାରିଲେ । ଦାରୋଗା ସରଜମିନ ତଦାରଖ କରି ବୁଝିଲେ ଯେ, ସବ ଘର ଭିତରୁ ଧୂନି ଘର ମଝିଆଏ ମନୁଷ୍ୟ ଗୋଟାଏ ଗଳି ଯିବାଭଳି ବିଲ ଖୋଳା ଯାଇଛି । ଧୂନିତଳେ ଅଢ଼େଇ ଅଢ଼େଇ ହାତ ଲମ୍ବା ଚଉଡ଼ା, ଅଢ଼େଇ ହାତ ଗଭୀର ଗୋଟାଏ ଗହ୍ୱର ଖୋଳା ହୋଇଛି, ତା

ଉପରେ ଗୃଖେଣ୍ଡ ମୋଟା ମାଜ ମାଟି ଅଛି । ସେହି ମାଟି ଉପରେ ଧୂଳି ଜଳେ । ସେ ଘର ଭିତରୁ ବଳବାଟରେ ମଣିଷ ଗଲା ଆସି ଧୂଳିତଳେ ବସିଥାଏ, ମହନ୍ତ କହୁଛ ଯଗୃବଲେ ଲୋକଟା ଭିତରୁ ଜବାବ ଦିଏ । ଘଟଣା ଦିନିରେ ଗୋଟାଏ ଗଞ୍ଜୋଢ଼ ଚେଲା ଧୂଳି ତଳେ ବସିଥିଲା—ତା ନାମ କୁଣ୍ଡା ଦାସ । ସେଦିନ ମହନ୍ତଙ୍କର ଘର ନିଶାରେ ଜ୍ଞାନ ଲୋପ ହୋଇଥିଲା, ଲାସ ଘର ମଣିଷ, ଘର ଶମୁଝାଟାରେ ଖୁବ୍ ବଳରେ ପାହାରେ ମାରବାରୁ ଉପର ମାଟି ଅଜ ନିଅଁ ସବୁ ଗାତରେ ପଡ଼ିଗଲା । ଦୁଇଟା ଲୋକ ଧସ୍‌ପସ ହୋଇ ପୋଡ଼ିମଲେ । ବାହାରେ ବଡ଼ ଗୋଳମାଳ ହେଉଥିବାରୁ ସେମାନଙ୍କ ଅକୁଳ ଚିତ୍କାର କେହି ଶୁଣି ପାରିଲେ ନାହିଁ ।

ଦାରୋଗା ସାହେବ ରିପୋର୍ଟ ଲେଖି ମାଇନା ସଙ୍ଗାରେ ଅଧପୋଡ଼ା ଲାସ ଯୋଡ଼ାକ ସର୍ଦାରକୁ ପଠାଇ ଦେଲେ । *

ଶ୍ରୀ ଫକୀରମୋହନ ସେନାପତି

---

* ଘଟନାଟି ଅଂଶିକ ସତ୍ୟ—ଘଟନାସ୍ଥାନ ଦଣପଲ୍ଲା । ସେ ମହନ୍ତ ପୋଡ଼ି ମରି ନ ଥିଲେ, ଗୁଡ଼ାଏ ଟଙ୍କା ଉପାର୍ଜନ କରି ଧସ୍‌ପଡ଼ିଥିଲେ ।

## କିରାଣୀ ଜୀବନ

ଉପେନ୍ଦ୍ର ବି. ଏ. ପାଶ କରିବା ପରେ ତାଙ୍କର ଶିକ୍ଷା ଦିଗରେ ଉଚ୍ଚାଭିଳାଷ ଅଙ୍କୁରି ବଢ଼ିବାରେ ଲାଗିଲା । ସେତେବେଳେ ତାଙ୍କ ମନର ଏକକୋଣରେ ଟିକିଏ ଅବସାଦର ଛାୟା ଦେଖାଦେଲା, ସେ ଅନୁଭବ କଲେ ଯେ, ସେ ବାସ୍ତବିକ ଏକ ଦରିଦ୍ର ପରିବାରର ସନ୍ତାନ । ନ ହେଲେ ତା ପୂର୍ବରୁ ସେ ନିଜକୁ ନିଜେ କେବେହେଲେ ଅଭାବଗ୍ରସ୍ତ ବୋଲି ମନେ କରି ନାହାନ୍ତି, ବରଂ ଧନୀ ସହପାଠୀଙ୍କ ସହ ଚାଲିଚଳନରେ ତାଳ ପକାଇବାପାଇଁ ଉପେନ୍ଦ୍ରଙ୍କର ଚେଷ୍ଟା ବରାବର ପ୍ରକାଶ ପାଇଥାଏ ।

ଉପେନ୍ଦ୍ରଙ୍କ ପିତା ଧନଞ୍ଜୟ ନିଜେ ଯେତେବେଳେ ପାଠ ପଢ଼ୁଥିଲେ, ସେତେବେଳେ ତାଙ୍କ ପରିବାରର ଅତି ଦରିଦ୍ର ଅବସ୍ଥା । ତାଙ୍କ ବାପା ଜମିବାଡ଼ି ଯାହାଥିଲା, ସବୁ ବିକି ତାଙ୍କୁ ପାଠ ପଢ଼ାଇ-ଥିଲେ । ବଡ଼ ଆଶା ଥିଲା ତାଙ୍କର ଯେ, ଧନଞ୍ଜୟ ଡେପୋଟି ହେବ ଓ ତା ପରେ ମନ କଲେ ଏକା ଦିନରେ ସବୁ ଧାର କରଜ ଯେ ଖାଲି ସୁଝି ଦେବ ତାହା ନୁହେଁ, କାଳକ୍ରମେ ଯେଉଁ ଜମିଦାର ତାଙ୍କ ପରିବାର ଉପରେ ନାନା ରକମର ଜୁଲମ କରିଛି ଓ କରୁଛି, ତା ଜମିଦାରୀ ମଧ୍ୟ କିଣି ନେବ । ଧନଞ୍ଜୟ ବି. ଏ. ପାଶ କଲେ ସତ,

କରିବାପାଇଁ । ଧୀରେ ଧୀରେ ଧନଞ୍ଜୟଙ୍କ ସ୍ତ୍ରୀ 'ସାଅନ୍ତାଣୀ' ବୋଲି ଅଭିହିତ ହେଲେ ।

ଏ ସବୁ ଗୃପ ପଞ୍ଚଲି ଧନଞ୍ଜୟଙ୍କ ମାସିକ ଗ୍ଧଳଣ ଟଙ୍କା ଉପରେ, ଧନଞ୍ଜୟ ବିବ୍ରତ । ପାଟଣାରେ ଏଠୁ ସେଠୁ ଧାର କରିବା ଆରମ୍ଭ କଲେ । ମନେ ମନେ ଭାବିଲେ ଯେ, ଘରୁ ସ୍ତ୍ରୀକୁ ପାଟଣା ନେଇ ଆସିଲେ ବହୁତ ଖର୍ଚ୍ଚ କମ୍ ହେବ । ସ୍ତ୍ରୀ ପାଟଣା ଆସିଲେ, ମାତ୍ର ସେଠି ଖର୍ଚ୍ଚ କମ୍ ହେବା ଦୂରେ ଥାଉ ବରଂ ବେଶି ହେଲା, କାରଣ ଗାଁର ହାଲଅ ଅଲଗା, ପାଟଣାର ହାଲଅ ଅଲଗା । ଅନ୍ୟ କିରାଣୀ ଓ ଅଫିସରମାନଙ୍କ ସ୍ତ୍ରୀମାନେ ସେଠି ଅଛନ୍ତି, ଗାଁରେ ବଡ଼ଲୋକ ପାଇଁ ଯେତେ ଖର୍ଚ୍ଚ, ପାଟଣାରେ ସେଥିପାଇଁ ଆହୁରି ବେଶି ଖର୍ଚ୍ଚ । ଅନ୍ୟମାନଙ୍କ ଗହଣା ଦେଖିଲେ, ଅନ୍ୟ ମାନଙ୍କ ଶାଢ଼ୀ ଦେଖିଲେ, ସେହିପରି ଜିନିଷ କିଣିବାକୁ ମନ । ଧନଞ୍ଜୟ ତ ନିଜେ ଏକ ମାନସିକ ଭ୍ରାନ୍ତିରେ ଅଛନ୍ତି, ତାଙ୍କର ଦମ୍ଭ କାହିଁ ନିଜ ସ୍ତ୍ରୀକୁ ବୁଝାଇ କହିବେ ଯେ, ଆୟ ଅନୁସାରେ ବ୍ୟୟ କରିବା ହେଉଛି ଗୃହସ୍ଥ ଓ ଗୃହିଣୀର କର୍ତ୍ତବ୍ୟ । ସ୍ତ୍ରୀ ନ ଭାବୁ ଯେ, ସ୍ୱାମୀ ଦରିଦ୍ର । ଆଉ ଯେ ଯାହା କହୁ ପଛକେ ସ୍ତ୍ରୀ ତ ବଡ଼ ବୋଲି କହିବ । ଧୀରେ ଧୀରେ ଧନଞ୍ଜୟଙ୍କର ଧାର ବଢ଼ିଲା । ଆୟଠାରୁ ବ୍ୟୟ ବେଶି କଲେ ଅସାଧୁତା ଯେ କେଉଁ ଛିଦ୍ରରେ କେଉଁଠି କେତେ-ବେଳେ ପ୍ରବେଶ କରେ, ତାହା ବୁଝିବା କଠିନ । ଲୋକ ଜାଣି ପୁଣି ପାରିବ ନାହିଁ ଯେ, ସେ ଅସାଧୁ ହୋଇଗଲାଣି । "ଗୃହସ୍ଥ ଶ୍ରେଷ୍ଠ, ବଣିଜ ମିଛ"—ଏ କଥାଟା ତ ସେହିପରି ସୃଷ୍ଟି ହୋଇ ଗୃହସ୍ଥରେ ଅସାଧୁତାକୁ ସାମାଜିକ ସମର୍ଥନ ଦାନ କରୁଛି ।

ଯେ, ଏବଂ ଅଭାଗା ପୁଅ ତାଙ୍କ କପାଳକୁ ଜଳୁଛି । କିନ୍ତୁ ତାହା ହେଲା ନାହିଁ, କାରଣ ଠିକ୍ ଦପୋଟି ଚାକିରି ନ ପାଇବାପରେ, ଧନଞ୍ଜୟ ସେକେଟେରିଏଟ୍‌ରେ କିରାଣୀ କାମ ପାଇଗଲେ । ଯେଉଁ ଦିନ ନିଯୁକ୍ତିପତ୍ର ଧନଞ୍ଜୟ ପାଇଛନ୍ତି, ସେ ନିଜେ ଖୁସି ହୋଇ ବାପାଙ୍କୁ ଖୁସି କରାଇବାପାଇଁ ନିଜର ନିଯୁକ୍ତିର ସମ୍ବାଦ ଦେଲେ । ବୁଢ଼ାର ମନ ଖୁସି; ମାତ୍ର ସେତେ ଖୁସି ନୁହେଁ, କାରଣ ଦପୋଟି ଚାକିରି ତ ହେଲା ନାହିଁ । ବୁଢ଼ା ପ୍ରସନ୍ନ ଅପ୍ରସନ୍ନ ଏହି ଉଭୟ ଭାବରେ କ୍ଷୀଣ ସ୍ୱରରେ କହିଲେ, "ହଁ, ଯାହା ଭାଗ୍ୟରେ ଯାହା ଅଛି । କରଣୀ ଚାକିରିଟା ଏ ତ ।" ଧନଞ୍ଜୟ କଥାଟାକୁ ବୁଝାଇ କହିଲେ "ଏ ସେ ରକମ କରଣୀ ଚାକିରି ନୁହେଁ, ଦପୋଟିମାନଙ୍କ କାଗଜପତ୍ର ଯେଉଁଠି ରଖାଯାଏ, ସେଇଠି ଏ କାମ । ବୁଝିବାକୁ ଗଲେ ଦପୋଟିମାନଙ୍କ ଉପରେ ପାହାଚର ଏ କାମ । ଦପୋଟି-ମାନଙ୍କ ଅଦଲବଦଳ, ତାଙ୍କ କାମର ଭଲମନ୍ଦ ବିଚାର ଏ ସବୁ ମୋର ହାତରେ ହେବ ।" ବୁଢ଼ା ଟିକିଏ ନିଠେଇକି ଧନଞ୍ଜୟ ଆଡ଼କୁ ଚାହିଁଲା । ତା ପରେ କଥା ବନ୍ଦ ହେଲା ।

ଗାଁରେ ହୁରି ପଡ଼ିଗଲା, ଧନଞ୍ଜୟ ବଡ଼ ଚାକିରି ପାଇ ପାଟଣା ଯାଉଛନ୍ତି—ସେତେବେଳେ ବିହାର ଓଡ଼ିଶା ଗୋଟିଏ ପ୍ରଦେଶ ଥିଲା । ଦରମା କେତେ କଣ କିଏ ତା ବୁଝୁଛି, ସମସ୍ତଙ୍କ ମୁହଁରେ 'ଧନଞ୍ଜୟ ଏକ ବଡ଼ ଚାକିରି ପାଇଛନ୍ତି ।' ଧନଞ୍ଜୟ ନିଜେ ମଧ୍ୟ ଏ ଜନରବକୁ ସାହାଯ୍ୟ କରୁଛନ୍ତି । କାରଣ ସେ ନିଜେ ସେଥିରୁ ଆନନ୍ଦ ପାଉଛନ୍ତି । ଦରମା ମାତ୍ର ମାସକୁ ଚାଳିଶ ଟଙ୍କା, ପ୍ରାୟ ଦଶ ବର୍ଷ ପରେ ଶହେ ଟଙ୍କା ପର୍ଯ୍ୟନ୍ତ ହେବ, ମାତ୍ର ନିଜ ମନକୁ ନିଜେ ଠକିବା ଅତି ସହଜ ବ୍ୟାପାର । ନିଜେ ଜଣେ ଯାହା, ତାହାଠାରୁ ଅନ୍ୟମାନେ

ତାଙ୍କୁ ବଡ଼ ଭାବନ୍ତୁ ଓ କହନ୍ତୁ, ଏ ଦୁର୍ବଳତା ମଧ୍ୟ କମ୍ ବଳଶାଳୀ ନୁହେଁ । ଧନଞ୍ଜୟ ବଡ଼ ଗୃହକର୍ତ୍ତା ପାଇଲା ବୋଲି ଖାଲି ଯେ ଲୋକେ କହିଲେ, ତା ନୁହେଁ, ସେ ନିଜେ ମଧ୍ୟ ଭାବିଲେ ଯେ, ସେ ଏକ ବଡ଼ ଗୃହକର୍ତ୍ତା ପାଇଛନ୍ତି । ସେ ଭାବିଲେ, ତାଙ୍କ ବାପା ଭାବିଲେ, ତାଙ୍କ ଘରର ଲୋକ ସବୁ ଭାବିଲେ, ଏପରି କି ତାଙ୍କ ନିଜ ସ୍ତ୍ରୀ ମଧ୍ୟ ଭାବିଲେ ଯେ, ଏକ ବଡ଼ ଗୃହକର୍ତ୍ତା ଧନଞ୍ଜୟ ପାଇଛନ୍ତି । କଲେଜରେ ପଢୁଥିବାବେଳେ ଧନଞ୍ଜୟ ବିବାହ କରିଥିଲେ, ତାଙ୍କର ଶ୍ରେଣୀର ଜଣେ ଗ୍ରାମର ଝିଅକୁ । ସେ ବିବାହରେ କୌଣସି ଉପନ୍ୟାସ ନ ଥିଲା, ଗତାନୁଗତିକ ବାହାଘର ମାତ୍ର ।

ଗୃହକର୍ତ୍ତାଟି ପାଇବା ପରେ ମାତ୍ରକ ମଧ୍ୟ ଧନଞ୍ଜୟଙ୍କ ଘରେ ଗୃହଚଳଣ ହଠାତ୍ ବଦଳି ବଦଳି ଗଲା । ତାଙ୍କ ସ୍ତ୍ରୀ ଅଳ୍ପ ହାତରେ କାମ କଲେ ନାହିଁ । ନିଜେ କଅଣ ବିଗୁଡ଼ିଲେ କେଜାଣେ, ଗାଁ ମାଇପେ ତାଙ୍କ କାନରେ ବସ୍ତିବର ପକାଇଲେ ଯେ, ତାଙ୍କର ସ୍ୱାମୀ ଜଣେ ବଡ଼ଲୋକ, ସେ ଅଳ୍ପର ହାତରେ କାମ କରିବେ ? ଧନୀ ଲୋକ ଘରେ ହାତରେ କାମ କରିବା କୃପଣତାର ଚିହ୍ନ, ତେଣୁ ଏକ ବଦନାମର କଥା । ଏପରି ବାୟୁମଣ୍ଡଳ ସୃଷ୍ଟି ହେଲା, ଯେଉଁଥିରେ ଘରେ ରୋଷେଇ କରିବା-ପାଇଁ ଜଣେ ଲୋକ ରଖିବା ଦରକାର ପଡ଼ିଲା, ବାଟବାଟ କରିବା ପାଇଁ ଅଳ୍ପର ଜଣେ ଲୋକ ରଖିବା ଦରକାର ପଡ଼ିଲା । ବୁଢ଼ା ଯେ ବିଲ ବାଡ଼ି କାମ ଦେଖିବାକୁ ଯାଉଥିଲେ ଓ ଦରକାର ପଡ଼ିଲେ ନିଜେ ଥୋଡ଼ ଦ'କେତ କାଟି ଦେଉଥିଲେ ବା ଖେତ ଦା ଛେଲ ଲଦ ଦେଉଥିଲେ, ତା ସବୁ ବନ୍ଦ ହୋଇଗଲା । ବର୍ତ୍ତମାନ ବୁଢ଼ା ପିଣ୍ଡାରୁ ନ ଉଠନ୍ତି । ମୂଲିଆ ବଢ଼ିଗଲେ ସବୁ କାମ

କିନ୍ତୁ ଡେପୋଟି ଚାକିରି ମିଳିଲା ନାହିଁ । ତାଙ୍କର କଲେଜ ସାଙ୍ଗ, ଏପରିକି ତାଙ୍କଠାରୁ ଯେଉଁମାନେ ଖରାପ ପଢୁଥିଲେ ସେମାନେ ଡେପୁଟି, ସବ୍‌ ଡେପୁଟି ହୋଇଗଲେ । ପବ୍‌ଲିକ୍‌ ସର୍ଭିସ କମିଶନର ଗତିବିଧି ତ ଅତି ରହସ୍ୟମୟ । କାହିଁକି ଯେ ଜଣେ ଗୋଟିଏ କାମ ପାଇଁ ବିବେଚିତ ହେଲା ଓ ଠିକ୍‌ ସେହିପରି ଆଉ ଜଣେ ନ ହେଲା, ସେ ରହସ୍ୟର ସମାଧାନପାଇଁ ଚେଷ୍ଟା କରିବା ସେହିପରି ନିରର୍ଥକ, ଯେପରି ହରଗୌରୀ ଫୁଲର କାହିଁକି ଗୋଟିଏ ପାଖୁଡ଼ାର ରଙ୍ଗ ଏକପ୍ରକାର ଓ ଅନ୍ୟ ପାଖୁଡ଼ାର ରଙ୍ଗ ଅନ୍ୟ ପ୍ରକାର, ଏ ରହସ୍ୟର ସମାଧାନ ଚେଷ୍ଟା । ଧନଞ୍ଜୟ ତ ଡେପୁଟି ହୋଇ ପାରିଲେ ନାହିଁ, ସେଥିପାଇଁ ସେ ନିଜେ ବା ତାଙ୍କ ବାପା ପବ୍‌ଲିକ୍‌ ସର୍ଭିସ କମିଶନ ବା ସରକାରଙ୍କୁ ଅଭିଶାପ ଦେଇ ନାହାନ୍ତି । କାରଣ ସେମାନଙ୍କ ପୂର୍ବ ବିଶ୍ୱାସ ହୋଇଗଲା ଯେ, ମୁରବି ଯୋର ନ ଥିବାରୁ ତାଙ୍କ ଡେପୋଟି ଚାକିରି ହେଲା ନାହିଁ । ମୁରବି ଯୋର ନାହିଁ, କାରଣ ତାଙ୍କ ପରିବାରର ଅବସ୍ଥା ସେପରି ସ୍ୱଚ୍ଛଳ ନୁହେଁ । ଏଥିରୁ ଅନ୍ୟ କାହାକୁ ଦୋଷ ଦେବା କଥା ସେମାନଙ୍କ ମନରେ ଉଠିଲା ନାହିଁ । କିନ୍ତୁ ମନର କେଉଁ ଗଭୀର କୋଣରେ ନିଶ୍ଚୟ ଏ ଇଚ୍ଛା ଜାଗ୍ରତ ହୋଇ କାର୍ଯ୍ୟକାରୀ ହୋଇଥିବ ଯେ, କୌଣସି ପ୍ରକାରେ ଅବସ୍ଥାଟା ସ୍ୱଚ୍ଛଳ ହୋଇଗଲେ ତେଣିକି ମୁରବି ଯୋର ଆସିଯିବ ଓ ତାହାର ଫଳରେ ପୁଅ ନାତିଙ୍କ ପକ୍ଷରେ ବଡ଼ ବଡ଼ ଚାକିରି ପାଇଁ କିଛି ବାଧା ରହିବ ନାହିଁ ।

ଧନଞ୍ଜୟ ଯଦି ବେଶି ଦିନ ବେକାର ରହିଥାନ୍ତେ ଓ ଏଠି ସେଠି ଦରଖାସ୍ତ ପକାଇ ବାରମ୍ବାର ବିଫଳମନୋରଥ ହୋଇଥାନ୍ତେ, ତେବେ ତାଙ୍କ ବାପାଙ୍କ ମୁହଁରୁ ନିଶ୍ଚୟ ବାହାରିଥାନ୍ତା

ଧାର ଛଡ଼ା ନାନା ଢଙ୍ଗରେ ଧନଞ୍ଜୟଙ୍କ ଆୟ ବଢ଼ାଇବାର ଚେଷ୍ଟା ଏପରି ହେଲା ଯେ, ସାଧାରଣ ଲୋକ ଜଣେ ସେପରି କରୁଥିଲେ ତାକୁ ଦୁନିଅଠା ଯାକ ଗାଳି ଦେଉଥାନ୍ତେ । ଯାହାହେଉ, ଧନଞ୍ଜୟ ବଡ଼ଲୋକ ପଣରେ ଚାଲିଛନ୍ତି, ଆୟକୁ ବନ୍ଧ ପଛରେ ରଖିଦେଇ ବ୍ୟୟକୁ ଆଗରେ ଦଉଡ଼ାଇ ଦେଇ ।

ଉପେନ୍ଦ୍ରଙ୍କ ହାଇସ୍କୁଲରେ ପଢ଼ା ଏହି ଅବସ୍ଥାରେ । ପିଲାଦିନୁ ଉପେନ୍ଦ୍ରଙ୍କ ଧାରଣା ଯେ, ସେ ଜଣେ ବଡ଼ ଲୋକର ପିଲା । କଲେଜରେ ମଧ୍ୟ ଉପେନ୍ଦ୍ର କିଛି କମ୍ ଖର୍ଚ୍ଚ କରନାହାନ୍ତି । ଉପେନ୍ଦ୍ର କଲେଜରେ ପଢ଼ିବା ବେଳକୁ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହୋଇ ସାରଲଣି । ତାଙ୍କ ବାପା ଧନଞ୍ଜୟ ମଧ୍ୟ ପାଟଣାରୁ ଆସି କଟକରେ ରହି ସାରଲେଣି । ଏଥିରେ ଘର ଖର୍ଚ୍ଚରେ ଟିକିଏ ତାରତମ୍ୟ ଘଟିଛି—ପାଟଣାଠାରୁ କଟକରେ ଖର୍ଚ୍ଚ କମ, ତାଛଡ଼ା ଘରୁ ଚାଉଳ ପ୍ରଭୃତି ଆଣାଇ ନେଇ କଟକ ଖର୍ଚ୍ଚକୁ କମାଇ ଦେବାରେ ଧନଞ୍ଜୟ ବେଶ୍ ନୈପୁଣ୍ୟ ଦେଖାଇଛନ୍ତି । କଟକରେ ରହି ଘରକଥା, ଗ୍ରାମବାସ ବୁଝିବାର ସୁଯୋଗ ମଧ୍ୟ ଧନଞ୍ଜୟ ପାଇଛନ୍ତି । ଗାଁର ଲୋକଙ୍କ ଆଖିରେ ଧନଞ୍ଜୟ ଜଣେ ଅତି ପ୍ରଧାନ ଲୋକ—ସବୁଅଡ଼େ ତାଙ୍କ ଦାଉ ଚାଲେ । କାରଣ ଯେକୌଣସି ଶାସନ ବିଭାଗର କଥା ହେଲେ ମଧ୍ୟ ଧନଞ୍ଜୟ ନିଜର ବ୍ୟକ୍ତିଗତ ପରିଚୟକୁ ବ୍ୟବହାର କରି ନିଜ ଗାଁର ପ୍ରତିନିଧି ହିସାବରେ ଗାଁ ଲୋକଙ୍କ କାମ ତୁଲାଇ ଦିଅନ୍ତି । ଏତଦ୍ଦ୍ୱାରା ଗାଁରେ ଧନଞ୍ଜୟଙ୍କ ପତିଅରା ବଢ଼ିଛି । ସେ ଦିଗରୁ ଅର୍ଥନୈତିକ ଉନ୍ନତି ମଧ୍ୟ ଟିକିଏ ଘଟିଛି, ତା ସାଙ୍ଗେ ସାଙ୍ଗେ ଖର୍ଚ୍ଚ ମଧ୍ୟ ସେହିପରି ବଢ଼ିଛି । ଖର୍ଚ୍ଚ ବଢ଼ିବାର ଗୋଟିଏ କାରଣ ହେଉଛି, ଉପେନ୍ଦ୍ରଙ୍କ

ପଢ଼ା । ସାଧାରଣ ଶ୍ରେଣୀର ପିଲାଙ୍କର କଲେଜ ପଢ଼ା ଖର୍ଚ୍ଚ ଯଦି ମାସିକ ଚାଳିଶ ଟଙ୍କା, ଉପେନ୍ଦ୍ରଙ୍କର ଷାଠିଏ ଟଙ୍କା ବା ତାଠାରୁ ଅନ୍ତୁର ବେଶି କିଛି ଦରକାର । କାରଣ ଉପେନ୍ଦ୍ରଙ୍କ ନିଜ ମନ ଭିତରେ ବଦ୍ଧମୂଳ ଧାରଣା ଯେ, ସେ ବଡ଼ଲୋକର ପିଲା ।

ସାଙ୍ଗ ସାଥୀମାନଙ୍କୁ ସିନେମାକୁ ଡାକିବା, ମଝିରେ ମଝିରେ ଜଳଖିଆ ଦୋକାନରେ ବଦାନ୍ୟତା ପ୍ରକାଶ କରିବା, ଶେଷରେ ଯେ ବାଳିକାବନ୍ଧୁ ମିଳିଲେ ସେମାନଙ୍କ ସହ ଆମୋଦ ପ୍ରମୋଦ କରିବା—ଏଇଥିରେ ଉପେନ୍ଦ୍ର ଯେପରି ଖର୍ଚ୍ଚ କଲେ, ସେଥିରେ ଅନେକ ସୁହୃଦବନ୍ଧୁଙ୍କ ଦୃଷ୍ଟି ତାଙ୍କ ଉପରେ ପଡ଼ିଥିଲା । ଆବଶ୍ୟକ ଅନୁସାରେ ଟଙ୍କା ଯୋଗାଇବା ଧନଞ୍ଜୟଙ୍କ ପକ୍ଷରେ ଅସମ୍ଭବ ହେଲା । କିନ୍ତୁ ଉପେନ୍ଦ୍ରଙ୍କ ଅଭ୍ୟାସ ତାଙ୍କୁ ସଂଯତ କରିପାରୁ ନାହିଁ । ପ୍ରଥମେ ତାଙ୍କ ମନରେ ଧାରଣା ହେଲା ଯେ, ବାପା ଧୀରେ ଧୀରେ କୃପଣ ହୋଇ ଯାଉଛନ୍ତି । ପୁଣି ତାଙ୍କ ମନକୁ ଆସିଲା, ସାନ ଭାଇ ଭଉଣୀଙ୍କ ପାଇଁ ଯେପରି ଖର୍ଚ୍ଚ ବଢ଼ି ଯାଉଛି, ସେଥିରେ ବାପାଙ୍କୁ ସାବଧାନ ହେବାକୁ ହେବ । ଖର୍ଚ୍ଚ ଦେବା ପାଇଁ ବାପା ତେଣେ ଟାଣି ହେଲେଣି, ଏଣେ ଉପେନ୍ଦ୍ରଙ୍କୁ ମଧ୍ୟ ଅଣ୍ଟ ଲାଗିଲାଣି । ଦୁହିଙ୍କ ମନରେ ଅବସ୍ଥା ପ୍ରତି ଅସନ୍ତୋଷ ଅଲକ୍ଷିତ ଭାବରେ ବଢ଼ି ବଢ଼ି ଚାଲିଛି; ଅଥଚ କାହାରି ମନକୁ ଏ କଥା ଲାଗି ନାହିଁ ଯେ, କିଛି ସମୟ ଚିନ୍ତା କରି ନିଜର ପ୍ରକୃତ ଅବସ୍ଥା ସମ୍ବନ୍ଧରେ ଗୋଟାଏ ଅଭ୍ରାନ୍ତ ଧାରଣା ପୋଷଣ କରିବା ଉଚିତ । ଏହି ଅସନ୍ତୁଷ୍ଟ ଜୀବନ ମଧ୍ୟରେ ଉପେନ୍ଦ୍ରଙ୍କ ଭଉଣୀ ବାହାଘରରେ ହଜାର ହଜାର ଟଙ୍କା ଖର୍ଚ୍ଚ ହେଲା । ଉପେନ୍ଦ୍ର ନିଜେ ମଧ୍ୟ ଏପରି ଏକ ବାଣ୍ଡକାର

ପ୍ରଣୟାର୍ଥୀ, ଯେ ପିଲାଦିନୁ ଅପେକ୍ଷାକୃତ ଧନୀଘରେ ବଢ଼ି ଆସିଛୁ ଓ କଲେଜରେ ବହୁ ଭବିଷ୍ୟତର ତାଜମହଲ ସ୍ୱପ୍ନରେ ଗଠନ କରି ଚାଲିଛୁ—ଉପେନ୍ଦ୍ର ଏ ବାଳିକାଟିର ଗୋଡ଼ ସାଙ୍ଗରେ ଗୋଡ଼ ପକାଇବା ପାଇଁ ଉପେନ୍ଦ୍ରଙ୍କୁ ଅର୍ଥାଭାବ କିପରି ବ୍ୟତିବ୍ୟସ୍ତ କରି ପକାଏ, ତାହା ସେ ନିଜେ ଠିକ୍ ଏ ଚିନ୍ତା କରୁଥିଲେ ଜାଣି ପାରୁଥାନ୍ତେ । ମାତ୍ର ବରାବର ସେ ନିଜ ବାପାଙ୍କୁ କେତେବେଳେ ଦୋଷ ଦିଅନ୍ତି, ପ୍ରାୟ ସର୍ବଦା ବର୍ତ୍ତମାନ ସମାଜର ଅର୍ଥନୈତିକ ସ୍ଥିତିକୁ ଦୋଷ ଦିଅନ୍ତି । ତାପରେ ନାଅଁପର କଲେଜ ବନ୍ଧୁତା ଚରମ ସୀମାକୁ ଚାଲିଯାଇ ପୁଣି କୁଆଡ଼େ ଲିଭିଯାଏ । ଉପେନ୍ଦ୍ରଙ୍କ ଉକ୍ତ ବାଳିକା ସହ ବନ୍ଧୁତା ମଧ୍ୟ ସେହିପରି କୁଆଡ଼େ ଲୋପ ପାଇଗଲା । ବାଳିକାଟି ଜଣେ ଆଇ. ଏ. ଏସ. ଅଫିସରଙ୍କ ସହ ବିବାହ କରିଗଲା । ଉପେନ୍ଦ୍ରଙ୍କ ମନରେ ଏ କଥା ରହିଗଲା ଯେ, ତାଙ୍କର ଅର୍ଥାଭାବ ହେତୁ ସେ ତାଙ୍କ ମନୋମତ ପ୍ରଣୟ ସାର୍ଥକ କରି ପାରିଲେ ନାହିଁ ।

ଏହି ପରିସ୍ଥିତି ମଧ୍ୟରେ ଉପେନ୍ଦ୍ର ବି. ଏ. ପାଶ କଲେ । ତା ପରେ ପ୍ରଶ୍ନ ଉଠିଲା, ଆଉ ଉପରକୁ କିପରି ପଢ଼ିବ । ଏଲାହାବାଦ ଇଉନିଭରସିଟିରେ ଦକ୍ଷତା ସହ ପାଶ କଲେ ନାମ ହେବ—ଏ ଅଭିଳାଷ ଉପେନ୍ଦ୍ରଙ୍କ ମନରେ ଉଠିବା ମାତ୍ରକେ ଅର୍ଥାଭାବ ତାଙ୍କ ମନକୁ ଘାରି ଦିଏ । ଧନଞ୍ଜୟ ଯେତେବେଳେ ଭାବନ୍ତି ଉପେନ୍ଦ୍ରର ଭବିଷ୍ୟତ୍, ସେତେବେଳେ ଆଉ ଉପରକୁ ପଢ଼ାଇବାପାଇଁ ଖର୍ଚ୍ଚ ଦେବା କଥା ସେ ଚିନ୍ତା ସୁଦ୍ଧା କରି ପାରନ୍ତି ନାହିଁ । ଧାର କରଜ ବହୁତ ହୋଇଗଲାଣି, ତାକୁ ତ ସବୁ ସୁଝିବାକୁ ହେବ । ଧନଞ୍ଜୟ ଚାହାନ୍ତି, ଘର ଚାହେଁ, ଅବସ୍ଥା ମଧ୍ୟ

ଚାହେଁ ଯେ, ଉପେନ୍ଦ୍ର କୌଣସି ଚାକିରି ବାକିରି କରି କିଛି ଉପାର୍ଜନ କରୁ । ଉପେନ୍ଦ୍ର ନିଜ ଆଖି ଆଗରେ ଦେଖୁଛନ୍ତି ଲୋକସବୁ ପରମିଟ୍ ଏ ପାଖ ସେ ପାଖ କରି ଶହ ଶହ, ହଜାର ହଜାର ରୋଜଗାର କରୁଅଛନ୍ତି—କେତେଟା ଲୋକ କଳାପୋତେଇ ଚାଲିଛି ବୋଲି ପାଟି କରୁଛନ୍ତି, ତାକୁ ଶୁଣୁଛି ବା କିଏ ? କଳାପୋତେଇ କଲେ କ'ଣ ସମ୍ମାନରେ କିଛି ବାଧା ଘଟୁଛି ? ଏ ସବୁ ଚିନ୍ତା ଉପେନ୍ଦ୍ରଙ୍କ ମନରେ ବାସ କରି ତାଙ୍କୁ ଚାକିରି କରି ଧନ ଉପାର୍ଜନ କରିବା ଚେଷ୍ଟାରୁ ନିବୃତ୍ତ କରାଉଛି । ସେ ଏମ. ଏ. ପଢ଼ିବେ ଓ ଦିନେ ଅତି ବଡ଼ଲୋକ ହେବେ—ଏହି ସ୍ୱପ୍ନରେ ସେ ବିଭୋର ।

୯

ଅକସ୍ମାତ୍ ଧନଞ୍ଜୟ ପୀଡ଼ିତ ହେଲେ ଓ କିଛିଦିନ ପରେ ତାଙ୍କର ମୃତ୍ୟୁ ମଧ୍ୟ ଘଟିଲା । ତାଙ୍କର ଶ୍ରାଦ୍ଧକ୍ରିୟା ଯାଉଛି କି ନ ଯାଉଛି, ଗାଁରେ କେତେ କୁଆଡ଼ୁ କେ ଧାର କରିଥିଲେ ସବୁ ଆସି ତାଗଦା କଲେ—ଧାର ପରିଶୋଧ କର । ଜ୍ଞାତିଏ ଯେ ଯେଉଁଠି ଥିଲେ ସୁବିଧା ଦେଖି ଜମି ଓ ଘରଡିହ ପର୍ଯ୍ୟନ୍ତ ଦଖଲ କରିବାକୁ ଉଦ୍ୟତ ହେଲେ । ଯେଉଁ ଧନଞ୍ଜୟଙ୍କୁ ଗାଁ ସାରା ଏତେ ମାନୁଥିଲେ ଓ ଯାହାଙ୍କର ଏତେ ପ୍ରତିପତ୍ତି ଥିଲା, ସେ ଯେ ମୃତ୍ୟୁର ଅବ୍ୟବହିତ ପରେ ଏପରି ଲୋକସ୍ମୃତିରୁ ଚାଲିଯିବେ—ତାହା କଳ୍ପନା ସୁଦ୍ଧା କରି ନ ଥିଲେ । ଘର ଚଳାଇବାର ଯୋଗ୍ୟତା ଉପେନ୍ଦ୍ରଙ୍କର ନାହିଁ । ଘର ଚଳାଇବା କିଛି ସାମାନ୍ୟ କଥା ନୁହେଁ । ରାଜ୍ୟ ଚଳାଇବାରେ ଯେତିକି ବୁଦ୍ଧି ଓ ଚତୁରତା ଆବଶ୍ୟକ, ଘର ଚଳାଇବାରେ ସେତିକି ବା ତାଠାରୁ ବେଶି । ବଡ଼ ବଡ଼ କଥା ଭାବିବା ଓ ସହଜ ଅର୍ଥାଗମର ସ୍ୱପ୍ନ ଦେଖିବା, ଏଥିରେ ଉପେନ୍ଦ୍ର

ପାରଦର୍ଶୀଥିଲେ । ଏ ଅବସ୍ଥାର ଦୁର୍ଯୋଗରେ ସେ ବିବ୍ରତ । ଅଭିଳାଷ ଟାଣୁଛି ତାଙ୍କୁ ଆଗକୁ, ମାତ୍ର ଅବସ୍ଥା ଟାଣୁଛି ପଛକୁ । ଏ ପରିସ୍ଥିତିରେ ବ୍ୟର୍ଥତା ତାଙ୍କ ମନକୁ ଖାଇଯାଉଛି । ଦୁନିଆ ପ୍ରତି ସେ ବିରକ୍ତ । କିରାଣୀଘରେ ଜନ୍ମ ହୋଇଛନ୍ତି ବୋଲି ନିଜକୁ ଅଭିଶପ୍ତ ମନେ କରୁଥାଆନ୍ତି । ସମାଜର ଅର୍ଥନୈତିକ ବିପ୍ଳବର ଲେଖା ପଢ଼ିଲେ ସେ ସମ୍ବନ୍ଧରେ ବକ୍ତୃତା ଶୁଣିଲେ ତାଙ୍କ ମନରେ ସନ୍ତୋଷ ଜାତ ହେଉଥାଏ, କିନ୍ତୁ କରିବେ କଣ ? ଉପୁଜିଥିବା ଅବସ୍ଥାର ସମ୍ମୁଖୀନ ହୋଇ ତାକୁ ଅସ୍ୱୀକାର କରିବାପାଇଁ ଯେ ସାହସ ଓ ଧୈର୍ଯ୍ୟ ଆବଶ୍ୟକ, ସେ ଶିକ୍ଷିତନ୍ତୁ ଶିଖିନାହାନ୍ତି ବା ସେ ଦିଗକୁ ତାଙ୍କର ମନ ଯାଉ ନ ଥାଏ । ଶେଷରେ ସେ ପୁଣି ସେହି ସେକ୍ରେଟେରିଏଟରେ ଏକ କାମ ଚେଷ୍ଟା କରି ପାଇଲେ କିନ୍ତୁ କିରାଣୀ ଜୀବନ ପ୍ରତି ତାଙ୍କର ଏତେ ବିତୃଷ୍ଣା ଯେ ସେ ସେକ୍ରେଟେରୀଏଟ୍ ଫାଇଲ ନେଇ ଏଣିକି ତେଣିକି ଅନାଇ କଲମ କେତେ ଗାର ଚଳାଉଥିଲେ ମଧ୍ୟ ତାଙ୍କ ମନ ଦୁନିଆ ସାରା ବୁଲି ଖାଲି ଅନ୍ୟାୟ ଅପମାନ ଭୋଗିବାରେ ଲାଗିଥାଏ । ସେକ୍ରେଟେରି- ଏଟର କିରାଣୀଗହଳ ଭିତରେ ଉପେନ୍ଦ୍ର କୁଆଡ଼େ ଅଲକ୍ଷ ଧଳେ ଉଭେଇଗଲେ—ଆଜି ତାଙ୍କ ପ୍ରତି କାହାର ଦୃଷ୍ଟି ନାହିଁ । କେବଳ ଦୁଇଟି ଘଟନାରେ ତାଙ୍କୁ ତାଙ୍କର ବନ୍ଧୁମାନେ ଦେଖିବାକୁ ପାଇଥିଲେ—ସେ ହେଉଛି ଏହି—

ଥରେ ଗୋଟିଏ କିରାଣୀମାନଙ୍କ ସଭାରେ ଦରମା ବୃଦ୍ଧି ଦାବିକରି ଏକ ପ୍ରସ୍ତାବ ଆଲୋଚିତ ହେଉଥାଏ । ସେହି ପ୍ରସ୍ତାବକୁ ସମର୍ଥନ କରି ଉପେନ୍ଦ୍ର କିରାଣୀ ଜୀବନ ବର୍ଣ୍ଣନା କରି ଏକ କରୁଣ ବକ୍ତୃତା ଦେଇଥିଲେ । ଶ୍ରୋତାମାନଙ୍କ ମଧ୍ୟରୁ ଅନେକେ ଦୀର୍ଘ ନିଶ୍ୱାସ ପକାଇ କହି ପକାଇଥିଲେ 'ଧିକ ଏ କିରାଣୀ ଜୀବନ ।'

ପୁଣି ଅନ୍ୟଥରେ ଏକ ସଭାରେ ଆଧୁନିକ ଶିକ୍ଷାର ସମାଲୋଚନା କରି ଏକ ପ୍ରସିଦ୍ଧ ବ୍ୟକ୍ତି ବକ୍ତୃତା ଦେଉଥିଲେ । ବର୍ତ୍ତମାନ ଶିକ୍ଷା କିପରି ଲୋକଙ୍କୁ ଅକାମୀ କରି ଦେଉଛି, କିପରି ସେମାନେ ଏ ଶିକ୍ଷା ଯୋଗେ ସଂସାର ଚଳେଇବାରେ ପାରୁନାହାନ୍ତି, ଏସବୁ ବୁଝେଇ ବକ୍ତା ମହାଶୟ କହୁଥିଲେ । ଶେଷରେ ସେ ଯେତେବେଳେ କହିଲେ ଏହି ଯେ ବିଶ୍ୱବିଦ୍ୟାଳୟ—ଏ ଏକ ଅଣ୍ଡାପେଡ଼ାକଳ । ଯୁବକମାନଙ୍କୁ ଧରି ତାଙ୍କର ରସ ଏ ବାହାର କରି ଖାଲି ଶୋଷା କରି ତାଙ୍କୁ ଫୋପାଡ଼ି ଦେଉଛି । ସଂସାରରେ କେବଳ ଛାଲ ହେବାର ଏମାନେ ଉପଯୁକ୍ତ ସ୍ୱାଧୀନ ନାଗରିକର ଜୀବନ ଗଠନ କରିବା ପରିବର୍ତ୍ତେ ଏ କଲେଜ ସବୁ କେବଳ ହୀନ କିରାଣୀ ଜୀବନ ଗଠନ କରୁଛି । ସେତେବେଳେ ସଭାପଛରୁ "ସାଧୁ, ସାଧୁ, ଅତି ଠିକ୍" ବୋଲି ଏକ ଚିତ୍କାର ଉଠିଲା । ଗୁହିଁ ଦେଇ ଦେଖିଲେ ଯେ ଉପେନ୍ଦ୍ର ପାଟି କରୁଛି ।

ଶ୍ରୀ ହରେକୃଷ୍ଣ ମହତାବ



ମୁଦ୍ରାକର—ଶ୍ରୀ ଘନଶ୍ୟାମ ଦାଶ, ନଜ୍ ଷ୍ଟୋର୍ସ ପ୍ରେସ୍, ବ୍ରହ୍ମପୁର ୧୯୫୫